# ସାପ ରାଇଜର କଥା

ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ



# ସାପ ରାଇଜର କଥା

ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ

ପ୍ରକାଶକ :



କଟକ - ୨

ସାପ ରାଇଜର କଥା ।। ଲେଖକ: ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ ।। ପ୍ରକାଶକ : ଅଗ୍ରଦୂତ, ବାଙ୍କାବଜାର, କଟକ - ୨ ।। ପ୍ରଥମ ପ୍ରକାଶ - ୨୦୦୨ ।। କମ୍ପ୍ୟୁଟର ସହାୟତା : କମ୍ପୋକେୟାର, ବାଦାମବାଡ଼ି,କଟକ-୧୨ ।। ମୁଦ୍ରଣ : ପରମହଂସ ପ୍ରିଣ୍ଟର୍ସ, କଟକ ।। ମୂଲ୍ୟ : ୪୦/-

Sapa Raijara Katha II Written by : Dr. Nityananda Swain II Published by : Agraduta, Bankabazar,Cuttack -2 II First Edition : 2002 II Cover Design by : SBI Co-operative Society Ltd., Cuttack II Price : **Rs. 40 /–**

ISBN81-86354-92-1



ଜୀବଜନ୍ତୁଙ୍କ ଜୀବନ ଯାତ୍ରା ସଂପର୍କରେ ସଦା ସନ୍ଧିତ୍ସୁ
ପରମପୂଜ୍ୟ ଶିକ୍ଷକ ପ୍ରଫେସର୍ ବାସୁଦେବ କରଙ୍କ
ଉଦ୍ଦେଶ୍ୟରେ ସଭକ୍ତି ସମର୍ପିତ ।

# ସୂଚୀ





# ସାପର ନାଡ଼ି ନକ୍ଷତ୍ର

ଅଧିକାଂଶ ଲୋକଙ୍କର ଧାରଣା ଯେ ସାପ ହେଉଛି ଏକ ଲାଳୁଆ, କୁତ୍ସିତ ଏବଂ ଭୟଙ୍କର ପ୍ରାଣୀ । କିନ୍ତୁ, ସାପ ଲାଳୁଆ ନୁହେଁ କି କୁତ୍ସିତ ମଧ୍ୟ ନୁହେଁ । ବରଂ ବହୁ ପ୍ରକାରର ସାପ ଦେଖିବାକୁ ଖୁବ୍ ସୁନ୍ଦର । କାହା ଦେହରେ ରଙ୍ଗବେରଙ୍ଗ ପଟି ତ ଅନ୍ୟ କାହା ଦେହରେ ବିଭିନ୍ନ ରଙ୍ଗର ଦାଗ ବା ଛିଟା ।

ସାରା ପୃଥିବୀରେ ପାଖାପାଖି ୨୫୦୦ ଜାତିର ସାପ ଅଛନ୍ତି । ସେମାନଙ୍କ ମଧ୍ୟରୁ ଏକ ତୃତୀୟାଂଶରୁ କମ୍ ଜାତିର ସାପଙ୍କଠାରେ ରହିଛି ବିଷ ଗ୍ରନ୍ଥି । ଏମାନଙ୍କଠାରେ ବିଷଗ୍ରନ୍ଥି ଥିଲେ ମଧ୍ୟ କେବଳ ଅଳ୍ପ କେତୋଟି ଜାତିର ବିଷାକ୍ତ ସାପ ମଣିଷପାଇଁ ବିପଦର କାରଣ । ପୁଣି, ସେମାନେ ମଣିଷପାଇଁ ବିପଦର କାରଣ ହେଲେ ମଧ୍ୟ, ମଣିଷଠାରୁ ନିଜକୁ ଦୂରେଇ ରଖିଥାନ୍ତି । ସେମାନଙ୍କର ନିରାପତ୍ତା ବିପନ୍ନ ନହେବା ପର୍ଯ୍ୟନ୍ତ ମଣିଷକୁ କାମୁଡ଼ନ୍ତି ନାହିଁ କି ଚୋଟ ମାରନ୍ତି ନାହିଁ ।

ଅଧିକାଂଶ ଶ୍ରେଣୀର ସାପ ତ ମଣିଷର ମିତ୍ର । ପୁଣି, ପରମ ମିତ୍ର । ସେମାନେ ଫସଲ ନଷ୍ଟ କରୁଥିବା ମୂଷାମାନଙ୍କୁ ଖାଇଦିଅନ୍ତି ତ ଖାଇଦିଅନ୍ତି ଫସଲରେ ଲାଗୁଥିବା କୀଟପତଙ୍ଗମାନଙ୍କୁ । ସେମାନେ ମଧ୍ୟ ଗେଣ୍ଡାମାନଙ୍କୁ ଖାଉଥିବାର ଦେଖାଯାଏ ।

## ସାପମାନଙ୍କର ବିବର୍ତ୍ତନ :

ସାପମାନେ ସରୀସୃପ । ସେମାନେ ଝିଟିପିଟିର ନିକଟ ସମ୍ପର୍କୀୟ ଏବଂ କୁମ୍ଭୀର, କଇଁଚ ଇତ୍ୟାଦିଙ୍କର ଦୂର ସମ୍ପର୍କୀୟ । ବିବର୍ତ୍ତନ ପ୍ରକ୍ରିୟାରେ ଆଦି ସରୀସୃପମାନଙ୍କଠାରୁ ବିକାଶ ଲାଭ କରିଛନ୍ତି ସାପଗୋଷ୍ଠୀ । ୨୦ କୋଟି ବର୍ଷ ତଳର ଟ୍ରାୟାସିକ୍ ଯୁଗରେ ସାପ ରହିଥିବାର ଜୀବାଶ୍ମରୁ ପ୍ରମାଣିତ । ୧୦ କୋଟି ବର୍ଷ ତଳର କ୍ରେଟାସିୟମ୍ ଯୁଗରେ ମଧ୍ୟ ସାପ ରହିଥିବାର ପ୍ରମାଣ ମିଳୁଛି ଜୀବାଶ୍ମରୁ । କିନ୍ତୁ ଏହି ଦୁଇ ଯୁଗର ମଧ୍ୟବର୍ତ୍ତୀ କାଳରେ ସାପର ବିବର୍ତ୍ତନ ବିଷୟରେ ବେଶୀ କିଛି ଜଣା ନାହିଁ ।

କେତେକ ପ୍ରାଣୀତତ୍ତ୍ୱବିତ୍‌ମାନଙ୍କର ବିଶ୍ୱାସ ଯେ ସାପମାନଙ୍କର ପୂର୍ବଜମାନେ ବଡ଼ ବଡ଼ ଘାସ ଉଠୁଥିବା ଅଞ୍ଚଳରେ ପ୍ରଥମେ ବାସ କରୁଥିଲେ । ସେତେବେଳେ ସେହି

ସାପମାନଙ୍କର ଗୋଡ଼ ଥିଲା । କିନ୍ତୁ ଗୋଡ଼ ରହିଥିବା ଯୋଗୁଁ ଘାସୁଆ ଭୂଇଁରେ ଚଲାବୁଲା କରିବାରେ ଅସୁବିଧା ହେଲା ସେମାନଙ୍କୁ । ତେଣୁ, ବିବର୍ତ୍ତନ ପ୍ରକ୍ରିୟାରେ କ୍ରମେ ସେମାନେ ଗୋଡ଼ ହରେଇ ବସିଲେ ଓ ହୋଇଗଲେ ହସ୍ତପଦହୀନ ଲମ୍ୱା ଝିଟିପିଟି !

ଅନ୍ୟ କେତେକ ବିଶେଷଜ୍ଞ ମତ ଦିଅନ୍ତି ଯେ ସାପମାନଙ୍କର ପୂର୍ବଜ ରହୁଥିଲେ ଗାତ ଭିତରେ । ଗାତ ଭିତରେ ରହୁଥିବାରୁ ଗୋଡ଼ ବିଶେଷ ଦରକାର ପଡୁନଥିଲା । ତେଣୁ, କ୍ରମେ ଗୋଡ଼ ଛିଡ଼ି ଛିଡ଼ି ପୂରା ଲୋପ ପାଇଗଲା । ଏହି ବିଳବାସୀମାନଙ୍କର ଚକ୍ଷୁ ମଧ୍ୟ କ୍ଷୟ ହୋଇଗଲା । ବିଳ ପରିତ୍ୟାଗ କରି ସେମାନେ ସ୍ଥଳବାସୀ ହୋଇ ଭୂମି ଉପରେ ରହିବା ଆରମ୍ଭ କରିବାରୁ ପୁଣି ବିକଶିତ ହୋଇଉଠିଲା ସେମାନଙ୍କର ଦୃଷ୍ଟି ଶକ୍ତି । ଝିଟିପିଟି ଏବଂ ଅନ୍ୟ ପ୍ରାଣୀଙ୍କ ଚକ୍ଷୁ ଓ ସାପର ଚକ୍ଷୁରେ ପାର୍ଥକ୍ୟ ପରିଲକ୍ଷିତ ହେବା ମୂଳରେ ଏହି କାରଣ ରହିଛି ବୋଲି ବିଶେଷଜ୍ଞମାନେ କହିଥାନ୍ତି ।

## ଶରୀର ଗଠନ :

ସାପର ହାତ ପାଦ ନାହିଁ । ତଥାପି ଆଦିମ କାଳର କେତେକ ସାପଙ୍କଠାରେ ପଛ ଗୋଡ଼ର ନିଦର୍ଶନ ଦେଖିବାକୁ ମିଳିଥାଏ । ସେମାନଙ୍କଠାରେ ମଧ୍ୟ ଦେଖିବାକୁ ମିଳେ ନିତମ୍ୱ ଅସ୍ଥି ବା କଟି ହାଡ଼ । ଅନ୍ୟ ସର୍ପମାନଙ୍କଠାରେ ଏଭଳି ଅବଶେଷ ଦେଖିବାକୁ ମିଳେ ନାହିଁ । କୌଣସି ସାପଠାରେ ଆଗଗୋଡ଼ ସଂଯୁକ୍ତ ହେବାପାଇଁ ଛାତିହାଡ଼ ନ ଥାଏ ।

ଆମର ଖପୁରିର ହାଡ଼ ଗୁଡ଼ିକ ସିନା ପରସ୍ପର ସହ ଦୃଢ଼ଭାବରେ ସଂଯୁକ୍ତ, କିନ୍ତୁ ସାପ ମୁଣ୍ଡର ହାଡ଼ଗୁଡ଼ିକ ପରସ୍ପର ସହ ଦୃଢ଼ ଭାବରେ ସଂଯୁକ୍ତ ହୋଇ ନଥାଏ । ଉପର ଓ ତଳ ମାଢ଼ି ଖୁବ୍ ସହଜରେ ଉପର ତଳ ହୋଇପାରେ । ତଳ ମାଢ଼ିର ବାମ ଓ ଡାହାଣ ପଟର ହାଡ଼କୁ ଲଗେଇ ରଖିଥାଏ ନମନୀୟ ବନ୍ଧନୀ ବା ଲିଗାମେଣ୍ଟ । ପାଟି ଭିତରେ ଥାଏ ଅନେକ ଦାନ୍ତ । ଦାନ୍ତମାନ ଛୁଞ୍ଚିଭଳି ମୁନିଆଁ । ସେଗୁଡ଼ିକ ପାଟିର ପଛଆଡ଼କୁ ବାଙ୍କି କରି ରହିଥାଏ ।

ବିବର୍ତ୍ତନ କ୍ରିୟା ଦ୍ୱାରା ସାପର ଶରୀର କ୍ରମେ ଲମ୍ୱା ହୋଇଗଲା । ଶରୀର ଲମ୍ୱ ହୋଇଯିବାରୁ ଅଭ୍ୟନ୍ତରସ୍ଥ ଅଙ୍ଗମାନଠାରେ ପରିଲକ୍ଷିତ ହେଲା ପରିବର୍ତ୍ତନ । ହୃତ୍‌ପିଣ୍ଡ ହୋଇଗଲା ଏକ ଲମ୍ୱାଳିଆ ଅଙ୍ଗ । ପିତ୍ତକୋଷ ଯକୃତ ସହ ଲାଖି ନରହି ରହିଲା ଦୂରେଇ ହୋଇ । କେତେକ ସାପଙ୍କଠାରେ ଗୋଟିଏ ଫୁସ୍‌ଫୁସ୍ କ୍ଷୟଯାଇ ରହିଲା ଗୋଟିଏ ମାତ୍ର କ୍ରିୟାଶୀଳ ଫୁସ୍‌ଫୁସ୍ ।

ସାପର ଦେହସାରା ରହିଛି କାତି । ବଡ଼ ବଡ଼ କାତିମାନ ରହିଛି ମୁଣ୍ଡର

ଉପରିଭାଗରେ । ମୁଣ୍ଡର ତଳପଟେ ମଧ୍ୟ ବଡ଼ବଡ଼ କାତି ଥାଏ । ପେଟରେ ବାମ ଡାହାଣ ଭାବରେ ରହିଥାଏ ଲମ୍ବା ଲମ୍ବା କାତି । କାତିର ଆକାର ଏବଂ ବିନ୍ୟାସକୁ ଦେଖି ସାପ ବିଷାକ୍ତ କି ବିଷହୀନ ଜଣା ପଡ଼ିପାରେ । ବିଭିନ୍ନ ପ୍ରକାରର ରଞ୍ଜକ କଣାକୁ ଚାହିଁ କାତିର ରଙ୍ଗ ଭିନ୍ନ ଭିନ୍ନ ହୋଇଥାଏ । ଏହି ରଞ୍ଜକ କଣାର ପ୍ରକାର ଭେଦରେ କେଉଁ ସାପ ଦେଖିବାକୁ କଳା ତ କିଏ ହଳଦିଆ ବା ଶାଗୁଆ ।

## ବିକଶିତ ଇନ୍ଦ୍ରିୟ :

ସାପମାନେ ଅତି ସକ୍ରିୟ ଶିକାରୀ । ତେଣୁ, ସେମାନଙ୍କର ଇନ୍ଦ୍ରିୟମାନ ସକ୍ରିୟ ହେବା ସ୍ୱାଭାବିକ । ବିଲବାସୀ ସାପମାନଙ୍କୁ ଛାଡ଼ିଦେଲେ ଅନ୍ୟ ସାପଙ୍କର ଦୃଷ୍ଟି ଶକ୍ତି ଖୁବ୍ ତୀକ୍ଷ୍ଣ । କୌଣସି ବସ୍ତୁକୁ ସହଜରେ ଦେଖିପାରିବା ନିମନ୍ତେ ସେମାନଙ୍କ ଆଖିର ଦୃଷ୍ଟିକାଚ ମଧ୍ୟ ଖୁବ୍ ସୁଚାରୁ ରୂପେ କାର୍ଯ୍ୟ କରିଥାଏ । ଆଖିରେ ପତା ନଥାଏ । ତା ବଦଳରେ ଆଖି ଦୁଇଟିକୁ ଘୋଡ଼େଇ ରଖିଥାଏ ସ୍ୱଚ୍ଛ କାତି । ଯେଉଁ ସାପମାନେ ଦିନବେଳା ଶିକାର କରିଥାନ୍ତି, ସେମାନଙ୍କ ଆଖିର ପୁଅଡ଼ୋଳା ଗୋଲାକାର, କିନ୍ତୁ ରାତ୍ରୀ ଶିକାରୀ ସାପଙ୍କ ଆଖିର ପୁଅଡ଼ୋଳା ଡିମ୍ବାକୃତି ଏବଂ ଲମ୍ବ ଭାବରେ ଅବସ୍ଥାପିତ ।

ସାପମାନଙ୍କର ଘ୍ରାଣଶକ୍ତି ମଧ୍ୟ ଅତ୍ୟନ୍ତ ତୀବ୍ର । ଏହି ଘ୍ରାଣ ଶକ୍ତି ଯୋଗୁଁ ସାପ ଶିକାରକୁ ବାରିପାରେ ଏବଂ ନିଜଗୋଷ୍ଠୀର ଅନ୍ୟମାନଙ୍କୁ ଚିହ୍ନଟ କରିପାରେ । ସାପର ଦୁଇଫାଳିଆ ଜିଭ ଶୁଙ୍ଘିବାରେ ସାପକୁ ସାହାଯ୍ୟ କରିଥାଏ । ସାପ ଜିଭ ବାହାର କରି ପୁଣି ପାଟି ଭିତରକୁ ନେଇଯାଏ । ଉପର ପାଟିରେ ଥାଏ ଘ୍ରାଣ ସ୍ନାୟୁର ସଂବେଦୀ କୋଷମାନ । ଜିଭ ସେହି କୋଷଗୁଡ଼ିକ ଉପରେ ଘଷି ହୋଇଗଲେ ସାପ ଗନ୍ଧ ବାରିପାରିବାକୁ ସକ୍ଷମ ହୁଏ । ଜିଭ ମଧ୍ୟ କାମ କରିଥାଏ ସ୍ପର୍ଶେନ୍ଦ୍ରିୟ ରୂପେ । କିନ୍ତୁ ଜିଭରେ ସ୍ୱାଦଗ୍ରନ୍ଥି ନଥାଏ ।

ସାପର ଶ୍ରବଣେନ୍ଦ୍ରିୟ ନାହିଁ । ବାୟୁ ସଂଚାରିତ କମ୍ପନକୁ ସେ ଗ୍ରହଣ କରିପାରେ ନାହିଁ । ସାପର ବାହ୍ୟ କର୍ଣ୍ଣ ନାହିଁ କି କର୍ଣ୍ଣପଟହ ବା ଗିର ମଧ୍ୟ ନାହିଁ । କିନ୍ତୁ ଇନ୍ଦ୍ରିୟ ଦ୍ୱାରା ସଂଚାରିତ କମ୍ପନକୁ ସାପ ସହଜରେ ଧରିପାରେ ।

## ସାପ ଗତି କରେ କିପରି :

ସାପର ଗୋଡ଼ ନାହିଁ । ଗୋଡ଼ ନଥିଲେ ମଧ୍ୟ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଚଳପ୍ରଚଳ ହେବାରେ ସାପର କୌଣସି ଅସୁବିଧା ହୁଏ ନାହିଁ । ଏହା ମସୃଣ ଭୂଇଁରେ ଯିବା ଆସିବା କରିପାରେ । ଆବଡ଼ା ଖାବଡ଼ା ଭୂଇଁରେ ଯିବା ଆସିବା କରିପାରେ । ଜଳରେ ପହଁରିପାରେ ଏବଂ ଗଛ ଚଢ଼ିପାରେ ମଧ୍ୟ ।

ସାପର ମେରୁଦଣ୍ଡ ଖୁବ୍ ନମନୀୟ । ସେ ନିଜର ଶରୀରକୁ ବାମ-ଡାହାଣ ଭାବରେ ତରଙ୍ଗାୟିତ କରି ଆଗକୁ ଆଗକୁ ଗତି କରିଥାଏ । ଶରୀରକୁ ବଙ୍କେଇବା ଫଳରେ ପ୍ରତି ବକ୍ର ଘାସ, ବୁଦା, ଢ଼ିପ, ଖାଲ, ଛୋଟ ପଥର ଆଦି ପ୍ରତିବନ୍ଧକକୁ ଅତିକ୍ରମ କରିବାରେ ସହାୟକ ହୋଇ ଶରୀରକୁ ଆଗମୁହାଁ ଠେଲି ଠେଲି ଚାଲେ । ଶରୀରର ଏହି ବକ୍ରତା ମଧ୍ୟ ପହଁରିବାରେ ସାହାଯ୍ୟ କରିଥାଏ ସାପକୁ ।



ଗଛ ଚଢୁଥିବା ସାପ

ସାପ ମଧ୍ୟ ସଁବାଳୁଆ ଭଳି ଗତି କରିପାରେ । ପେଟର କାତିକୁ ଠେଲି ଠେଲି ସାପ ଘୁଷୁରି ଘୁଷୁରି ଆଗକୁ ଯାଇଥାଏ । ଏଭଳି ଗତିରେ ତାକୁ ସାହାଯ୍ୟ କରିଥାଏ ଶରୀରର ଶକ୍ତିଶାଳୀ ମାଂସପେଶୀମାନ । ପେଟର କାତି ମଧ୍ୟ ଗଛ ଚଢ଼ିବାରେ ସାପକୁ ସହାୟତା କରିଥାଏ ।

ସାପଠାରେ ପରିଲକ୍ଷିତ ହୁଏ ଅନ୍ୟ ଏକ ପ୍ରକାରର ଗତି । ସାପ ସାମାନ୍ୟ ଆଗକୁ ଉହୁଙ୍କି ଯାଇ ସାମନା ପଟକୁ ଦୃଢ଼ କରି ଧରି ରଖେ ଓ ତା'ପରେ ଟାଣିନିଏ ଶରୀରର ଲାଞ୍ଜ ଅଂଶକୁ ।

ମରୁଭୂମିରେ ବାସ କରୁଥିବା କେତେକ ସାପ କଡ଼ପଟିଆ ଭାବରେ ଗତି କରିଥାଆନ୍ତି । ଗତି କଲାବେଳେ ଶରୀରର ଠାଏ ଠାଏ ଅଞ୍ଚଳ କେବଳ ଭୂଇଁ ସଂସ୍ପର୍ଶରେ ଆସିଥାଏ ।

ସାପର ବେଗ ବିଷୟରେ କଳନା କରିବା କଷ୍ଟ । ସବୁଠାରୁ ଦ୍ରୁତଗାମୀ ସାପ ବୋଧହୁଏ ଘଣ୍ଟାକୁ ପାଞ୍ଚ ଛଅ କିଲୋମିଟରରୁ ଅଧିକ ବେଗରେ ଗତି କରିପାରେ ନାହିଁ । ଏହି ବେଗକୁ ନିରବଛିନ୍ନ ଭାବରେ ମଧ୍ୟ ବଜାୟ ରଖିପାରେନି ସେ ।

## ଆକ୍ରମଣ ଏବଂ ପ୍ରତିରକ୍ଷା :

ସାପମାନେ ଶିକାର ଧରିବା ଏବଂ ଶିକାରକୁ କରାୟତ୍ତ କରିବାପାଇଁ ବିଭିନ୍ନ ପ୍ରକାରର କୌଶଳ ଅବଲମ୍ବନ କରିଥାନ୍ତି । ବେଳେବେଳେ ସାପମାନେ ଶିକାରକୁ ଦୁଇ

ମାଡ଼ି ଭିତରେ ଚାପି ଧରି ସାଙ୍ଗେ ସାଙ୍ଗେ ଗିଳି ଦିଅନ୍ତି । ଏହି ଉପାୟରେ କୀଟପତଙ୍ଗ ଏବଂ ସେମାନଙ୍କର ଲାର୍ଭା, ପୋକଜୋକ, ଗେଣ୍ଡା, ମାଛ, ବେଙ୍ଗ ଇତ୍ୟାଦିଙ୍କୁ ସହଜରେ ଧରି ଖାଇଥାନ୍ତି ସାପମାନେ । ଅନ୍ୟ କେତେକ ଶିକାରକୁ ଭୂଇଁ ଉପରେ ନିଜ ଶରୀର ଦ୍ୱାରା ଗୁଡ଼େଇ ରଖି ସେମାନେ ଖାଇଥାଆନ୍ତି ।

କେତେକ ସାପ ଶିକାର ଦେହରେ ଗୁଡ଼େଇ ହୋଇ ତାକୁ କାବୁ କରିଦିଅନ୍ତି । ଶିକାର ଦେହରେ ଦୁଇ ତିନିଥର ଗୁଡ଼େଇ ହୋଇ ଚାପି ଦିଅନ୍ତି ଶିକାରକୁ । ଶିକାର ନିଃଶ୍ୱାସ ଛାଡ଼ିଲାପରେ ପୁଣି ଜୋରରେ ଗୁଡ଼େଇ ହୋଇ ଯାଆନ୍ତି ତା'ର ଶରୀରରେ । ଏହା ଫଳରେ ସେ ଆଉ ନିଶ୍ୱାସ ନେଇ ପାରେନି । ତେଣୁ ଅବିଳମ୍ବେ ସେ ମୃତ୍ୟୁମୁଖରେ ପଡ଼ିଥାଏ । ତେବେ ଏପରି କରିବାଦ୍ୱାରା ଶିକାରର ହାଡ଼ମାନ ଭାଙ୍ଗିନଥାଏ କି ଶିକାର ମାଂସପିଣ୍ଡୁଳାରେ ପରିଣତ ହୋଇନଥାଏ ।

ବିଷକ୍ରିୟା ଦ୍ୱାରା ଶିକାରକୁ ମାରିଦେବା ସମ୍ଭବ ହୁଏ ବିଷାକ୍ତ ସାପମାନଙ୍କ ଦ୍ୱାରା । ସାପ ଶିକାରକୁ କାମୁଡ଼ିବା ଫଳରେ ତା'ର ପୋଲାଦାନ୍ତ ଦେଇ ଶିକାର ଶରୀରରେ ବିଷ ଅନୁପ୍ରବେଶ କରିଯାଏ । ବିଷର ଜ୍ୱାଳାରେ ଶିକାର ନିସ୍ତେଜ ହୋଇପଡ଼େ କିମ୍ବା ମରିଯାଏ । ତେଣୁ ତାକୁ ଗିଳି ପକେଇବା ସାପ ପକ୍ଷେ ସହଜସାଧ ହୋଇପଡ଼େ ।

ସାପର ଆକାରରୁ ହିଁ ସେ ଖାଇବାପାଇଁ ନିର୍ବାଚନ କରୁଥିବା ଶିକାରର ଆକାର ସ୍ଥିରୀକୃତ ହୋଇଥାଏ । ତଥାପି, ସାପର ମୋଟେଇ ଠାରୁ ଅଧିକ କେତେକ ଗୁଣ ମୋଟେଇ ବିଶିଷ୍ଟ ପ୍ରାଣୀକୁ ସାପ ଗିଳି ପକେଇବା କିଛି ବିଚିତ୍ର ନୁହେଁ । ସାପ ନିଜ ଦାନ୍ତ ଦ୍ୱାରା ଶିକାରକୁ ଜାବୁଡ଼ି ଧରେ । ସାପର ଦାନ୍ତ ପଛଆଡ଼କୁ ବଙ୍କେଇ ହୋଇ ରହିଥିବାରୁ ଶିକାର ସହଜରେ ସାପପାଟିରୁ ଖସି ଯାଇପାରେ ନାହିଁ ଓ ପେଟ ଭିତରକୁ ଯିବାରେ ସହଜ ହୋଇଥାଏ । ସାପର ତଳମାଡ଼ି ଖପୁରି ସହ ଦୃଢ଼ ଭାବରେ ସଂଯୁକ୍ତ ହୋଇନଥାଏ । ତେଣୁ ପାଟିକୁ ବଡ଼ ଆଁ କରି ମେଲେଇବାରେ ସମସ୍ୟା ହୁଏନାହିଁ । ସାପର ତଣ୍ଟି ମଧ ଖୁବ୍ ନମନୀୟ । ତାହାଛଡ଼ା ତା'ର ଉପର ଏବଂ ତଳ ମାଢ଼ିର ଡାହାଣ ଏବଂ ବାମପଟ ସ୍ୱତନ୍ତ୍ର ଭାବରେ ଚାଳିତ ହୋଇପାରେ । ଶିକାରକୁ ପାଟିରେ ଜାବୁଡ଼ି ଧରି ରଖିଲେ ମଧ ସାପ ମାଢ଼ିର ସ୍ୱତନ୍ତ୍ର ଗଠନ ଯୋଗୁଁ ସେତେବେଳେ ନିଶ୍ୱାସ ପ୍ରଶ୍ୱାସ ନେବାରେ ତାକୁ ଆଦୌ ଅସୁବିଧା ହୁଏ ନାହିଁ ।

ଖାଦ୍ୟ ନ ମିଳିଲେ ସାପ ମଧ କିଛିଦିନ ପାଇଁ ଅଖିଆ ରହିପାରେ । ଅନ୍ୟ ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ଭଳି ସାପ ବିଶେଷ ସକ୍ରିୟ ନୁହେଁ । ତେଣୁ, ସେ ଯାହା ଖାଏ, ତାହା ଚଞ୍ଚଳ ଜାରିତ ହୋଇଯାଏ ନାହିଁ । ସାପ ସିନା ଖାଦ୍ୟ ସଙ୍କଟ ସମ୍ଭାଳି ନିଏ, ହେଲେ ପାଣି ନ ପିଇ ରହିପାରେ ନାହିଁ । ପାଣି ପିଇଲାବେଳେ ସାପ ତା' ମୁଣ୍ଡର ତଳ

ଅଂଶକୁ ପାଣିରେ ବୁଡ଼େଇ ରଖେ ଏବଂ ତଣ୍ଟିର ସଂକୋଚନ କ୍ରିୟାଦ୍ୱାରା ଜଳ ପେଟ ଭିତରକୁ ଚାଲିଯାଏ ।

ସାପ ଉପରେ ବିପଦ ପଡ଼ିଲେ ସେ ତା'ର ସ୍ୱତନ୍ତ୍ର ପ୍ରତିରକ୍ଷାବ୍ୟବସ୍ଥାର ସଦୁପଯୋଗ କରିଥାଏ । ଅଧିକାଂଶ ଜାତିର ସାପ ମଣିଷକୁ ଆକ୍ରମଣ କରନ୍ତି ନାହିଁ । ହେଲେ, ନାଗସାପର ଚରିତ୍ର ଅଲଗା । ତେବେ, ମିଳନ ଋତୁରେ ଅଣ୍ଡିରା ଓ ମାଈ ସାପ ଏକତ୍ର ରହିଥିବା ବେଳେ ସେମାନଙ୍କ ଶାନ୍ତି ବ୍ୟାହତ ହେଲେ ସେମାନେ ଆକ୍ରମଣ କରିବା ଭଳି ବ୍ୟବହାର ପ୍ରଦର୍ଶନ କରିଥାନ୍ତି ।

## ଶୀତ ନିଦ୍ରା :

ପକ୍ଷୀ ଏବଂ ସ୍ତନ୍ୟପାୟୀପ୍ରାଣୀମାନେ ନିଜ ଶରୀରର ତାପମାତ୍ରାକୁ ସ୍ଥିର ରଖିପାରନ୍ତି । କିନ୍ତୁ ସାପ ତା' ଦେହର ତାପମାତ୍ରାକୁ ସ୍ଥିର ରଖିପାରେ ନାହିଁ । ସାଧାରଣ ଭାବରେ ଦେଖିଲେ ତା' ଶରୀରର ତାପମାତ୍ରା ପରିବେଶର ତାପମାତ୍ରାଠାରୁ ପ୍ରାୟ ଏକ ଡିଗ୍ରୀ ସେଣ୍ଟିଗ୍ରେଡ କମ୍ ଥାଏ କିମ୍ବା ବେଶୀ ଥାଏ । ଫଳରେ ଖରାଦିନର ଟାଇଁଟାଇଁଆ ଖରା କି ଶୀତଦିନର କୋଲମରା ଥଣ୍ଡା ତା'ପାଇଁ ଅସହ୍ୟ ହୋଇପଡ଼େ । ଶୀତ ପଡ଼ିଲେ ଥଣ୍ଡାରୁ ସୁରକ୍ଷିତ ରହିବାପାଇଁ ସାପ ଗାତଭିତରେ, ପଥର ଫାଙ୍କରେ କି ଗଛ କୋରଡ଼ରେ ନିର୍ଜୀବ ଭଳି ପଡ଼ିରହେ । ବେଳେବେଳେ ଏକାଧିକ ସାପଗୋଷ୍ଠୀ ଉଷୁମ ଟାଣିବାପାଇଁ ଏକତ୍ର ବାସ କରନ୍ତି ।

## ଯୌନ ମିଳନ ଓ ପ୍ରଜନନ :

ଶୀତ ଦିନ ସରିଗଲେ ସାପମାନେ ନିଜ ନିଜ ଶୀତ ଆବାସରୁ ବାହାରି ଆଖପାଖରେ ଚଲାବୁଲା କରନ୍ତି । କିଛିଦିନ ପରେ ଅଣ୍ଡିରା ସାପ ମାଈସାପ ସନ୍ଧାନରେ ଲାଗିପଡ଼େ । ସାପର ବାହ୍ୟରୂପକୁ ଦେଖି ସେ ଅଣ୍ଡିରା କି ମାଈ ବାରିବା କଷ୍ଟ । କିନ୍ତୁ ସାଧାରଣ ଭାବରେ ଦେଖିଲେ ମାଈ ସାପ ଅଣ୍ଡିରା ସାପ ତୁଳନାରେ ଟିକିଏ ଅଧିକ ଲମ୍ବା ଏବଂ ମୋଟା ମଧ । ଅଣ୍ଡିରା ସାପର ଲାଞ୍ଜ ଦୀର୍ଘ ।

ମାଈ ସାପ ଠାରୁ ବାହାରୁଥିବା ଗନ୍ଧକୁ ବାରି ଅଣ୍ଡିରା ସାପ ତା'ର ଖୋଜ ଖବର ନିଏ ଓ ସେଥିରେ ସଫଳ ମଧ ହୁଏ । ମାଈସାପ ଘୁଷୁରି ଘୁଷୁରି ଯିବାବେଳେ ତା' ଚମରୁ ଉକ୍ତ ଗନ୍ଧପାଇଁ ଦାୟୀ ଉପାଦାନ ବାହାରି ତା'ର ଯିବା ରାସ୍ତାରେ ଲାଖି ଯାଇଥାଏ । ତେଣୁ ସେହି ଗନ୍ଧକୁ ବାରି ମାଈ ସାପର ସନ୍ଧାନ ନେବାରେ ଅଣ୍ଡିରା ସାପର କୌଣସି ଅସୁବିଧା ହୁଏ ନାହିଁ ।

ବିଭିନ୍ନ ଜାତିର ସାପଙ୍କ ମିଳନରୀତି ଭିନ୍ନଭିନ୍ନ । ଉଦାହରଣ ସ୍ୱରୂପ ଅଣ୍ଡିରା



ଅଣ୍ଡାରୁ ବାହାରୁଥିବା ସାପଛୁଆ

ପାଣି ସାପ ତା' ନିଜର ଚିବୁକକୁ ମାଈ ସାପର ପିଠି ଉପରେ ଘଷି ତା'ର ମନକଥା ଜଣେଇଥାଏ । ଅନ୍ୟକେତେକ ଜାତିର ଅଣ୍ଡିରା ସାପ ବଣବୁଦା, ପଥର ମୁଣ୍ଡିଆ, ପୋଖରୀ ଆଦିକୁ ଭ୍ରୂକ୍ଷେପ ନକରି ମାଈ ସାପର ପିଛା କରେ ଓ ମାଈସାପ ପାଖରେ



ସାପ ଓ ସାପଛୁଆ

ପହଞ୍ଚି ଗଲାପରେ ଉଭୟ ପରସ୍ପର ସହ ଗୁଡ଼େଇ ହୋଇ ଯାଆନ୍ତି । ତା'ପରେ ଉଭୟ ନିଜ ନିଜର ମୁଣ୍ଡ ଟେକି, ମୁଣ୍ଡକୁ ପାଖାପାଖି ରଖି, ଦେହକୁ ଅଲଗା ଅଲଗା ରଖନ୍ତି ଓ

ଏହିପରି ଭଙ୍ଗୀରେ ଚଲାବୁଲା କରନ୍ତି । ଏଭଳି ରୀତି ଘଣ୍ଟାଧିକ କାଳ ଚାଲେ । ତା'ପରେ ଉଭୟ ମିଳନରତ ହୋଇଥାଆନ୍ତି ।

କେଉଁ ଜାତିର ମାଈ ସାପ ଅଣ୍ଡା ଦିଏତ ଅନ୍ୟ କେଉଁ ଜାତିର ମାଈ ସାପ ଛୁଆ ଜନ୍ମ କରେ । ଅନ୍ୟ କେତେକ ଜାତି ସାପର ଅଣ୍ଡା ମାଆ ଶରୀର ଭିତରେ ରହିଥିବା କାଳରେ ଫୁଟି ସେଥିରୁ ଛୁଆ ବାହାରିଥାଏ । କେତେକ ମାଈ ସାପ ଯତ୍ନ ସହ ସନ୍ତାନମାନଙ୍କର ଲାଳନ ପାଳନ କରିଥାନ୍ତି । ସାପମାନଙ୍କର ଗର୍ଭକାଳ ବିଷୟରେ ନିର୍ଦ୍ଦିଷ୍ଟ ଭାବରେ ଜଣାପଡ଼ି ନାହିଁ ।

ତେବେ ମା' ପେଟରୁ ବାହାରିଲାବେଳେ ସାପ ଛୁଆର ଚାରିପଟେ ଘୋଡ଼େଇ ହୋଇ ରହିଥାଏ ଏକ ପତଳା ପରଦା । ସାପ ଛୁଆ ନିଜେ ନିଜେ ସେହି ପରଦାକୁ ଫଟେଇ ବାହାରକୁ ଚାଲିଆସେ । ସାପଛୁଆ ନିଜ ହେପାଜତ ନିଜେ କଲାପରେ ମା' ଆଉ ସେଥିପ୍ରତି ବିଶେଷ ଆଗ୍ରହ ଦେଖାଏ ନାହିଁ ।

ଖତଗଦା, ପଚାସଢ଼ା ତାଳପତ୍ର ଏବଂ ବନ୍ଧବାଡ଼ର ଖାଲୁଆ ଜାଗାରେ ସାପମାନେ ଅଣ୍ଡା ଦେଇଥାନ୍ତି । ଅଣ୍ଡାଦିଆ ସାପମାନଙ୍କ ମଧ୍ୟରୁ ଅଧିକାଂଶ ଅଣ୍ଡା ଦେଇସାରି ତାକୁ ପରିତ୍ୟାଗ କରି ଚାଲିଯାଆନ୍ତି । ମାଈ ଅଜଗର ସାପ କିନ୍ତୁ ଅଣ୍ଡାକୁ ଜଗି ରହି ଉଷୁମାଇ ଥାଏ ଓ ଅଣ୍ଡା ଉଷୁମେଇବା କାଳରେ ତା' ଶରୀରର ତାପମାତ୍ରା କିଛି ଡିଗ୍ରୀ ପର୍ଯ୍ୟନ୍ତ ବଢ଼ି ଯାଇଥାଏ ।

ସାପ ଅଣ୍ଡା ଦେଖିବାକୁ ଧଳା କିମ୍ବା ଈଷତ୍ ହଳଦିଆ । ଅଣ୍ଡାର ଖୋଳପାରେ ଥାଏ ଏକାଧିକ ସୂତାଳିଆ ପରସ୍ତ । ଅଣ୍ଡା ଭିତରେ ବଢୁଥିବା ସାପ ଛୁଆର ମୁଣ୍ଡରେ ଥାଏ କଣ୍ଟାଳିଆ ଅଙ୍ଗଟିଏ । ତାହାରି ସାହାଯ୍ୟରେ ଅଣ୍ଡା ଖୋଳପାକୁ ଫୁଟେଇ ସେ ବାହାରକୁ ଆସିଥାଏ ।

ବିଭିନ୍ନ ଜାତିର ମାଈ ସାପଠାରୁ ଜାତ ହେଉଥିବା ଛୁଆମାନଙ୍କର ସଂଖ୍ୟାରେ ବିଭିନ୍ନତା ପରିଲକ୍ଷିତ ହୋଇଥାଏ । କିଏ ୧ ରୁ ୭ଟି ଅଣ୍ଡା ଦିଏ ତ ଅନ୍ୟ କିଏ ୨ ରୁ ୫ଟି ଅଣ୍ଡା । କୌଣସି କୌଣସି ମାଈସାପ ୧୪ଟି ପର୍ଯ୍ୟନ୍ତ ଅଣ୍ଡା ଦେଇଥାଏ । ଗୋଟିଏ ଗୋଟିଏ ଜାତିର ସାପ ଏକାଥରକେ ୭୬ରୁ ୭୮ଟି ଛୁଆ ଦେଇଥିବାର ପ୍ରମାଣ ଅଛି ।

## ବୃଦ୍ଧି ଏବଂ କାତି ଛଡ଼େଇବା ପ୍ରକ୍ରିୟା :

ବଞ୍ଚି ରହିଥିବା ଯାଏ ସାପମାନଙ୍କର ବୃଦ୍ଧି ପ୍ରକ୍ରିୟା ଅବ୍ୟାହତ ରହିଥାଏ । ଏକବର୍ଷ ବୟସ ପୂରିବାବେଳକୁ ସାପଛୁଆର ଲମ୍ବ ହୋଇଯାଇଥାଏ ଦୁଇଗୁଣ । କିନ୍ତୁ ବୟସ ବଢ଼ିବା ସଙ୍ଗେ ସଙ୍ଗେ ଶରୀର ବୃଦ୍ଧିର ହାର ହ୍ରାସ ପାଇ ପାଇ ଯାଏ । ଶରୀର

ବୃଦ୍ଧି ନିର୍ଭର କରେ ଖାଦ୍ୟର ପରିମାଣ ଏବଂ ପରିବେଶର ତାପମାତ୍ରା ଉପରେ । ଶୀତଦିନେ ଶୀତ ନିଦ୍ରାରେ ଅବସ୍ଥାନ କରିଥିବାବେଳେ ଶରୀର ବୃଦ୍ଧିର ହାର ଥାଏ ମନ୍ଥର ।

ସାପ ବଢ଼ିବା ସଙ୍ଗେ ସଙ୍ଗେ ମଝିରେ ମଝିରେ କାତି ଛାଡ଼େ । ଏହି ପ୍ରକ୍ରିୟାରେ ସାପ ତା'ର ଚର୍ମ ଆବରଣ ବା ଚର୍ମର ଖୋଳ ଭିତରୁ ବାହାରି ଆସେ । କାତି ଛାଡ଼ିବା ପୂର୍ବରୁ ସାପର ପୁରୁଣା ଚର୍ମ ତଳେ ତିଆରି ହୋଇଯାଏ ନୂଆ ଚର୍ମ ଆବରଣ ଓ କାତି ଛାଡ଼ିବା କାଳରେ ପୁରୁଣା ଚର୍ମ ଆବରଣଟି ହିଁ ସାପ ଶରୀରରୁ ପୃଥକ୍ ହୋଇଯାଏ ।

କାତି ଛାଡ଼ିବାର ପାୟ ଦଶନ୍ଦିନ ପୂର୍ବରୁ ସାପର ଆଖିଦ୍ୱଇଟି ଦୁଧିଆ ବା ଧୂଆଁଳିଆ ଦେଖାଯାଏ । ଶରୀର ରଙ୍ଗ ହୋଇଯାଏ ନିସ୍ତେଜ । ତା'ପରେ ଆଖି ପରିଷ୍କାର ହୋଇଯାଏ ଓ ଓଠ ଧାରରୁ ପଛଆଡ଼କୁ କାତି ଉତୁରିବା ଆରମ୍ଭ ହୋଇଯାଏ । ମୁଣ୍ଡରୁ କାତି ଛଡ଼େଇବା ନିମନ୍ତେ ସାପ ତା'ର ମୁଣ୍ଡକୁ ପଥରଖଣ୍ଡ, ଗଛର ବକ୍କଳ କିମ୍ବା ଅନ୍ୟ କୌଣସି ଅମସୃଣ ପୃଷ୍ଠ ଉପରେ ଘଷିଥାଏ ଓ ଏପରି କରିବା ଫଳରେ ଚର୍ମ ଆବରଣଟି ଦେହରୁ ଅଲଗା ହୋଇଯିବା ପ୍ରକ୍ରିୟା ସହଜ ହୋଇଯାଏ । ତେବେ କାତି ଛାଡ଼ିବାରେ ସାହାଯ୍ୟ କରିଥାଏ ଏହି ଘର୍ଷଣ ପ୍ରକ୍ରିୟା ଏବଂ ମାଂସପେଶୀର ସଂକୁଚନ । କାତି ଛାଡ଼ିଦେବା ପରେ ସାପ ଦେଖାଯାଏ ସତେଜ ଏବଂ ଉଜ୍ଜ୍ୱଳ ।

ସାପ ତା'ର ପ୍ରାକୃତିକ ପରିବେଶରେ କେତେଦିନ ଧରି ବଞ୍ଚିରହେ, ତାହା କହିବା କଷ୍ଟ । କିନ୍ତୁ ଚିଡ଼ିଆଖାନା ବା ସରୀସୃପ ଉଦ୍ୟାନରେ ରଖାଯାଇଥିବା ଆନାକୋଣ୍ଡା ସାପ ପ୍ରାୟ ୨୮ ବର୍ଷ ଧରି ବଞ୍ଚି ରହୁଥିବାବେଳେ ବୋଆ ବଞ୍ଚେ ୨୩ ବର୍ଷ ଏବଂ ବୋଡ଼ା ୨୨ବର୍ଷ । ନାଗ ସାପ ପ୍ରାୟ ୧୩ବର୍ଷ ବଞ୍ଚି ରହେ ।

## ସାପର ବାସସ୍ଥାନ :

ସାପମାନଙ୍କୁ ଗ୍ରୀଷ୍ମମଣ୍ଡଳୀୟ ଏବଂ ସମଶୀତୋଷ୍ଣ ମଣ୍ଡଳୀୟ ଜଳବାୟୁରେ ଦେଖିବାକୁ ମିଳିଥାଏ । ଉତ୍ତର ଏବଂ ଦକ୍ଷିଣ ମେରୁଅଞ୍ଚଳ, ହାୱାଇ ଦ୍ୱୀପପୁଞ୍ଜ, ଆୟାର୍ଲାଣ୍ଡ ଏବଂ ନିଉଜିଲାଣ୍ଡରେ ନିଜସ୍ୱ ସାପ ନାହାନ୍ତି । ସାପମାନେ ଖୁବ୍ କଷ୍ଟ ସହିଷ୍ଣୁ । ତେଣୁ ପ୍ରତିକୂଳ ପରିବେଶରେ ମଧ୍ୟ ସେମାନେ ନିଜକୁ ଚଳେଇ ନିଅନ୍ତି । ତେବେ ଶୀତଦିନେ ଶୀତନିଦ୍ରା ଯିବାନିମନ୍ତେ ସେମାନେ ଅନୁକୂଳ ପରିବେଶ ଦରକାର କରିଥାନ୍ତି । ସେ ଯାହାହେଉ, ସବୁଠାରୁ ଅଧିକ ଜାତିର ସାପ ଦେଖିବାକୁ ମିଳନ୍ତି ଗ୍ରୀଷ୍ମ ମଣ୍ଡଳୀୟ ଅଞ୍ଚଳରେ ।

କେତେକ ସାପ ଗାତ କରି ଭୂଇଁ ତଳେ ରହିଥାନ୍ତି । ମାଟି ତାଡ଼ିବା ପାଇଁ ସେମାନଙ୍କର ମୁଣ୍ଡ ଗୋଜିଆ ହୋଇଥାଏ । ଭୂଇଁ ଉପରେ ବାସ କରୁଥିବା କେଉଁ ସାପ




ବିଷାକ୍ତ ସାପ

ମୋଟା ଏବଂ ଓଜନିଆ ତ ଅନ୍ୟ କିଏ ସରୁ । ଭୂଇଁ ଉପରେ ବାସ କରୁଥିବା ସାପମାନେ ପଥର ଫାଙ୍କ କିମ୍ବା ଅନ୍ୟପ୍ରାଣୀଙ୍କ ଗାତ ଭିତରେ ମଧ୍ୟ ଆଶ୍ରୟ ନେଇଥାନ୍ତି । ସେମାନେ ମଧ୍ୟ ବୁଦା କି ଗଛ ଚଢ଼ି ପାରନ୍ତି ଏବଂ ଆବଶ୍ୟକ ପଡ଼ିଲେ ପାଣିରେ ପହଁରି ପାରନ୍ତି ।

## ଭାରତର ସାପ :

ଆମ ଭାରତରେ ପ୍ରାୟ ୨୧୬ଟି ବିଭିନ୍ନ ଜାତିର ସାପ ଦେଖାଯାଆନ୍ତି ।




ବିଷହୀନ ସାପ

ସେମାନଙ୍କ ମଧ୍ୟରୁ ୫୨ଟି ଜାତି ବିଷାକ୍ତ । ଏହି ୫୨ଟି ବିଷାକ୍ତ ଜାତିର ସାପମାନଙ୍କ ମଧ୍ୟରୁ ୨୦ଟି ଜାତି ସମୁଦ୍ରବାସୀ ଏବଂ ଅବଶିଷ୍ଟ ୩୨ଟି ଜାତି ସ୍ଥଳବାସୀ । ସମୁଦ୍ରରେ ବାସ କରୁଥିବା ସାପମାନେ ସାଧାରଣତଃ ବଙ୍ଗୋପସାଗରରେ ବିଚରଣ କରିଥାନ୍ତି ।

ସମୁଦ୍ରସାପମାନଙ୍କର ଲାଞ୍ଜ ଚେପ୍‌ଟା । ସେମାନେ କଦବା କେମିତି ମଣିଷକୁ କାମୁଡ଼ି ଥାଆନ୍ତି ।

ଭାରତରେ ଦେଖାଯାଉଥିବା ମୁଖ୍ୟ ବିଷାକ୍ତ ସାପ ହେଲେ ନାଗ ବା ଗୋଖର (କଠଉ ଚିହ୍ନ ଯୁକ୍ତ, ପଦ୍ମ ଚିହ୍ନ ଯୁକ୍ତ ତମ ଏବଂ ଫଣାରେ ଗାର ଥିବା ବା ଆଦୌ କୌଣସି ଚିହ୍ନ ନଥିବା ଗୋଖର), ଚିତି, ରଣା, ଚନ୍ଦ୍ର ବୋଡ଼ା ଓ ଧୂଳି ନାଗ (ଏକ ଜାତୀୟ ବୋଡ଼ା) । ଧୂଳି ନାଗ ରାଜସ୍ଥାନର ମରୁଭୂମି ଅଞ୍ଚଳରେ ଦେଖିବାକୁ ମିଳନ୍ତି । ଅହିରାଜ ଏବଂ ଶଙ୍ଖଚୂଡ଼ ସବୁଠାରୁ ବେଶୀ ବିଷାକ୍ତ ।

ବିଷହୀନ ସାପମାନଙ୍କ ମଧ୍ୟରେ ଅଜଗର, ଢମଣା, ପାଣିଧଣ୍ଡ, ତେଲିଆ, ନାଣ୍ଡୁ, ଦୋମୁଣ୍ଡିଆ, ଦୁଧିଆ ବୋଡ଼ା, କାଉଚିଆ, ଲାଉ ଡଙ୍କ, ଅଣ୍ଡା ଖାଇ ଆଦି ପ୍ରଧାନ ।

## ବିଷାକ୍ତ ସାପ ଏବଂ ବିଷହୀନ ସାପକୁ ଚିହ୍ନିବେ କିପରି :

ସାଧାରଣତଃ ସାପ ପେଟ ପଟର କାତି, ମୁଣ୍ଡର କାତି, ଦାନ୍ତ, ଲାଞ୍ଜ, ଚାଲିଚଳନ ଏବଂ ସାପକାମୁଡ଼ା ଦାଗରୁ ସାପ ବିଷାକ୍ତ କି ବିଷହୀନ ତାହା ଚିହ୍ନା ପଡ଼ିଥାଏ ।



ମୁଣ୍ଡ, ପିଠି ଓ ପେଟର କାତି

**ବିଷାକ୍ତ ଓ ବିଷହୀନ ସାପ ମଧ୍ୟରେ ରହିଥିବା ପାର୍ଥକ୍ୟ ନିମ୍ନରେ ଉଲ୍ଲେଖ କରାଯାଉଛି ।**

| | ବିଷାକ୍ତ ସାପ | ବିଷହୀନ ସାପ |
|---|---|---|
| ୧. ପେଟ ପଟର କାତି (ସାପକୁ ଓଲଟେଇ ଦେଇ ପେଟକୁ ଉପର-ମୁହାଁ କରି ରଖିଲେ ହିଁ ଏହି କାତିକୁ ପରୀକ୍ଷା କରାଯାଏ) | କାତିମାନ ବଡ଼ ଏବଂ ପେଟର ଓସାରିଆ ପଟକୁ ପୂରାପୂରି ଆବୋରି ରହିଥାଏ । | କାତିଗୁଡ଼ିକ ଛୋଟ ଛୋଟ । ଏହା ପେଟର ସମ୍ପୂର୍ଣ୍ଣ ପ୍ରସ୍ଥକୁ ଆବୋରି ରହି ନଥାଏ । |
| ୨. ମୁଣ୍ଡର କାତି | ୧. ଛୋଟ(ବୋଡ଼ା)<br>୨. ଅପେକ୍ଷାକୃତ ବଡ଼ | କାତି ବଡ଼, କିନ୍ତୁ ବିଷାକ୍ତ ସାପଠାରେ |




ସାପଦାନ୍ତ ଏବଂ କାମୁଡ଼ା ଚିହ୍ନ

| | | |
|---|---|---|
| | (କ) ଆଖି ଏବଂ ନାକପୁଡ଼ା ମଧ୍ୟବର୍ତ୍ତୀ ଅଞ୍ଚଳରେ ଏକ ଗର୍ତ୍ତ (ଗର୍ତ୍ତମସ୍ତକୀ ବୋଡ଼ା)<br>(ଖ) ଉପର ମାଢ଼ିରେ ଥିବା ତୃତୀୟ କାତିଟି ଆଖି ଏବଂ ନାକ ଆବରଣକୁ ସ୍ପର୍ଶ କରିଥାଏ (ନାଗ, ଅହିରାଜ, କୋରାଲ୍ ସାପ)।<br>(ଗ) ପିଠି ଉପରେ ଥିବା ମଝି ଧାଡ଼ିର କାତିମାନ ବଡ଼। ପାଟିର ତଳ ପୃଷ୍ଠରେ ଚାରିଟି ବଡ଼ ବଡ଼ ଅବଅଧରୀୟ (ଇନ୍‌ଫ୍ରାଲାବିଆଲ୍) ଏବଂ ଏମାନଙ୍କ ମଧ୍ୟରୁ ଚତୁର୍ଥ ଅବଅଧରୀୟଟି ସବୁଠାରୁ ବଡ଼। | ପରିଲକ୍ଷିତ ହେଉଥିବା ଚରିତ୍ରମାନ ନଥାଏ |
| ୩. ଦାନ୍ତ | ଖାଲୁଆ କିମ୍ବା ପୋଲା | ଛୋଟ ଏବଂ ନିଦା |
| ୪. ଲାଞ୍ଜ | ଚାପି ହୋଇ ସଂକୁଚିତ | ବିଶେଷ ସଂକୁଚିତ |
| ୫. ଅଭ୍ୟାସ | ସାଧାରଣତଃ ନିଶାଚର | ପ୍ରାୟତଃ ନିଶାଚର ନୁହେଁ। |
| ୬. କାମୁଡ଼ା | ଦୁଇଟି ବିଷ ଦାନ୍ତ ଚିହ୍ନ। ଅନ୍ୟ ଦାନ୍ତମାନଙ୍କର ଚିହ୍ନ ଥାଇପାରେ କି ନ ଥାଇପାରେ। | ଧାଡ଼ିରେ ରହିଥିବା ଏକାଧିକ ଦାନ୍ତ ଚିହ୍ନ। |



# ସାପ ବିଷ

ବିଶ୍ୱ ସ୍ୱାସ୍ଥ୍ୟସଂସ୍ଥାର ଏକ ଅନୁଧ୍ୟାନରୁ ପ୍ରକାଶ ଯେ, ରୁଷ, ଚୀନ ଓ ମଧ୍ୟ ଏସିଆକୁ ବାଦଦେଲେ ସାରା ପୃଥିବୀରେ ପ୍ରତିବର୍ଷ ୩୦,୦୦୦ ରୁ ୪୦,୦୦୦ ବ୍ୟକ୍ତି ସାପ କାମୁଡ଼ାରେ ପ୍ରାଣ ହରାଇଥାଆନ୍ତି । କେବଳ ଏସିଆ ମହାଦେଶରେ ସାପ କାମୁଡ଼ା ଜନିତ ମୃତ୍ୟୁସଂଖ୍ୟା ବାର୍ଷିକ ୨୫,୦୦୦ ରୁ ୩୫,୦୦୦ । ଆମ ଦେଶରେ ସାପ କାମୁଡ଼ା ଦ୍ୱାରା ଆକ୍ରାନ୍ତ ହୋଇ ବର୍ଷକୁ ୧୫,୦୦୦ ରୁ ୨୦,୦୦୦ ଲୋକ ମୃତ୍ୟୁ ବରଣ କରୁଛନ୍ତି । ତେବେ ସାପର ବିଷହିଁ ଶରୀରରେ ବହୁ ପ୍ରତିକ୍ରିୟା ସୃଷ୍ଟି କରି ରୋଗୀର ମୃତ୍ୟୁ ଘଟାଇଥାଏ ।

ଜନ୍ମ ହେବାର ପ୍ରଥମ ଦିନରୁ ହିଁ ସାପଠାରେ ବିଷର ସଞ୍ଚାର ହୋଇଥାଏ । ଏହି ଦିନିକିଆ ସାପଛୁଆ ମଧ୍ୟ କାମୁଡ଼ିବାକୁ ସକ୍ଷମ, କିନ୍ତୁ ବିଷର ପରିମାଣ ଯଥେଷ୍ଟ ହୋଇ ନଥିବାରୁ ଛୋଟ ସାପଛୁଆ କାମୁଡ଼ିଲେ ବିଶେଷ କ୍ଷତି  ହେବାର ସମ୍ଭାବନା ନ ଥାଏ । କିନ୍ତୁ ବୟସ ବଢ଼ିବା ସଙ୍ଗେ ସାପଠାରେ ବିଷର ପରିମାଣ ମଧ୍ୟ ବଢ଼ି ଚାଲିଥାଏ । ସବୁ ସାପର ଯେ ବିଷ ନଥାଏ, ତାହା ଅନ୍ୟତ୍ର ଆଲୋଚନା କରାଯାଇଛି ।

## ବିଷ କ୍ଷରଣ :

ଅଧିକାଂଶ ବିଷାକ୍ତ ସାପମାନଙ୍କ କ୍ଷେତ୍ରରେ ବିଷଥଳିଟି ସାପ ଚକ୍ଷୁର ପଛପଟେ ରହିଥାଏ ଓ ପଛଆଡ଼କୁ ଲମ୍ବି ଯାଇଥାଏ । ବିଷଥଳିରୁ ଗୋଟିଏ ଛୋଟ ନଳୀଦେଇ ବିଷ ବାହାରିଥାଏ । ନିଜ ଜୀବନ କାଳ ମଧ୍ୟରେ ବିଷାକ୍ତ ସାପ ବହୁବାର କାମୁଡ଼ିପାରେ ।




ବିଷାକ୍ତ ସାପର ପାଟି ଏବଂ ବିଷଥଳୀ

କାମୁଡ଼ିବା ଯୋଗୁଁ ବିଷଥଳିରେ ବିଷର ପରିମାଣ କମିଯାଏ ଓ ପରେ ପୁଣି ବିଷ ତିଆରି ହୋଇ ବିଷର ପରିମାଣ ବୃଦ୍ଧି ପାଇଯାଏ । ଏହି କାରଣରୁ ସାପକୁ ମଝିରେ ମଝିରେ

କାମୁଡ଼ାଇ ସାପ ବିଷ ସଂଗ୍ରହ କରିବା ସମ୍ଭବ ହୋଇଥାଏ । ସାଧାରଣତଃ ମାସିକିଆ ବ୍ୟବଧାନରେ ସାପଠାରୁ ବିଷ ସଂଗ୍ରହ କରାଯାଏ ପ୍ରତିଥର ଯେଉଁ ହାରରେ ବିଷ ସଂଗ୍ରହ କରାଯାଏ ତାହା ନିମ୍ନରେ ଦିଆଗଲା ।

**ଶୁଖିଲା ବିଷର ପରିମାଣ**

| | | |
|---|---|---|
| ଗୋଖର | ୨୦୦ | ମିଲିଗ୍ରାମ |
| ବୋଡ଼ା | ୧୫୦ | ମି.ଗ୍ରା. |
| ଚିତି | ୨୨ | ମି.ଗ୍ରା. |
| ଏକିସ୍ | ୫ | ମି.ଗ୍ରା. |

ଆପଣମାନେ ଶୁଣି ଆଶ୍ଚର୍ଯ୍ୟ ହେବେ, ମାତ୍ର ୧୨ ମିଲିଗ୍ରାମ ପରିମାଣର ଗୋଖର ବିଷ, ୧୫ ମିଲିଗ୍ରାମ ପରିମାଣର ବୋଡ଼ା ବିଷ, ୬ ମିଲିଗ୍ରାମ ପରିମାଣର ଚିତି ବିଷ ଓ ୮ ମିଲିଗ୍ରାମ ପରିମାଣର ଏକିସ୍ ବିଷ ଗୋଟିଏ ସୁସ୍ଥ ବୟସ୍କ ବ୍ୟକ୍ତିର ମୃତ୍ୟୁ ଘଟାଇବା ପାଇଁ ଯଥେଷ୍ଟ । ଏଣୁ ଛୋଟ ସାପର ବିଷ ଟାଣ କଥାଟି ସତ ।

ଗୋଖର ସାପର ବିଷ ଦେଖିବାକୁ ଈଷତ୍ ହଳଦିଆ ଓ ପ୍ରାୟ ସ୍ୱଚ୍ଛ । ଏହା ସାମାନ୍ୟ ଲାଳୁଆ । ସଦ୍ୟ ସଂଗୃହୀତ ବିଷରେ ଲାଳ ସହିତ ବହୁ ଏନ୍‌ଜାଇମ୍ ଓ ଅନ୍ୟାନ୍ୟ ଉପାଦାନ ରହିଥାଏ । ଖରା ବାଜିଲେ ଏହା ଅସ୍ୱଚ୍ଛ ହୋଇଯାଏ । ଅନ୍ୟ ପକ୍ଷରେ ବୋଡ଼ା ସାପର ବିଷ ଦେଖିବାକୁ କେତେବେଳେ ଧଳା ତ କେତେବେଳେ ହଳଦିଆ ।

ବେଳେ ବେଳେ ବାମ ପାଖ ବିଷଦାନ୍ତରୁ ଗୋଟିଏ ରଙ୍ଗର ବିଷ ବାହାରୁ ଥିଲାବେଳେ ଡାହାଣ ପାଖ ଦାନ୍ତରୁ ଆଉ ଏକ ରଙ୍ଗର ବିଷ ବାହାରି ପାରେ । ଉଭୟ ପଟରୁ ବାହାରୁଥିବା ବିଷରେ ରହିଥିବା ଉପାଦାନର ପରିମାଣରେ ସାମଞ୍ଜସ୍ୟ ନଥିବାର ମଧ ଦେଖାଯାଇଥାଏ । ଫଳରେ ଏହାର ବିଷାକ୍ତ ପ୍ରଭାବ ମଧ ସମାନ ନହେବା ସ୍ୱାଭାବିକ । କେତେକ କ୍ଷେତ୍ରରେ ଅଣ୍ଡିରା ଗୋଖର ଓ ଚିତି ସାପରୁ ବେଶୀ ବିଷ ବାହାରୁଥିବା ବେଳେ ଏହି ଧରଣର ମାଇସାପରୁ ବାହାରୁଥିବା ବିଷର ପରିମାଣ କମ୍ । ଅଣ୍ଡିରା ଓ ମାଇ ସାପ ଭେଦରେ ବୋଡ଼ା ବିଷର ପରିମାଣ ପ୍ରାୟତଃ ସମାନ ।

ବର୍ଷର ବିଭିନ୍ନ ସମୟରେ ବିଷର ପରିମାଣରେ ମଧ କମ୍ ବେଶୀ ପରିଲକ୍ଷିତ ହୋଇଥାଏ । ଖରାଦିନେ ବିଷର ପରିମାଣ ବେଶୀ ଓ ଶୀତଦିନେ ଏହାର ପରିମାଣ କମ୍ ହେଲେ ମଧ ଏହା ଅପେକ୍ଷାକୃତ ବେଶୀ ବହଳିଆ । ତେଣୁ ଖରାଦିନେ ବେଶୀ ପରିମାଣର ବିଷ ରୋଗୀର ମୃତ୍ୟୁ ଘଟାଉଥିବାବେଳେ ଶୀତଦିନେ କମ୍ ପରିମାଣର ବିଷରେ ରୋଗୀର ମୃତ୍ୟୁ ହୋଇଥାଏ । କଳାନାଗ ଓ ଅହିରାଜ ସାପ କାମୁଡ଼ିଲେ ସାଧାରଣ ଗୋଖର ସାପକାମୁଡ଼ା ତୁଳନାରେ ବେଶୀ ପରିମାଣ ବିଷ ବାହାରି ଥାଏ । ଏହି କାରଣରୁ କଳାନାଗ ଓ ଅହିରାଜ ଭୟଙ୍କର ଭାବରେ ବିଷାକ୍ତ ବୋଲି ଲୋକେ ବିଶ୍ୱାସ କରିଥାଆନ୍ତି ।

## ବିଷର ପ୍ରକୃତି :

ବିଷ ଅମ୍ଳଯୁକ୍ତ । ଏହାର ସାନ୍ଦ୍ରତା ୧.୦୩୯ ରୁ ୧.୦୭୦ । ଶୁଖିଗଲେ ଏହାର ସ୍ଫଟିକ ଖଣ୍ଡ ପତଳା ଛୁଞ୍ଚିଭଳି ଦେଖାଯାଏ । ଏହି ସ୍ଫଟିକ ଖଣ୍ଡ ଗୁଡ଼ିକ ଜଳରେ ଦ୍ରବଣୀୟ ଓ ଏହା ବହୁ ସମୟ ଧରି ଜଳରେ ଦ୍ରବୀଭୂତ ଅବସ୍ଥାରେ ରହିଥାଏ ।

ସାପ ବିଷ ରକ୍ତ ସଂସ୍ପର୍ଶରେ ନ ଆସିଲେ ପ୍ରାୟତଃ କୌଣସି କ୍ଷତି କରେନାହିଁ । ତେଣୁ ଏହାକୁ ହାତରେ ଧରିବା ଏପରିକି ପାଟି ବାଟେ ଖାଇଦେବାରେ ମଧ କିଛି କ୍ଷତି ହୁଏ ନାହିଁ । ପେଟ ଭିତରେ ଏହା ଜୀର୍ଣ୍ଣ ହୋଇଯାଏ । କିନ୍ତୁ ଦାନ୍ତ ମୂଳେ, ମାଢ଼ିରେ ବା ପାଟିରେ କୌଣସି କ୍ଷତ ଥିଲେ ବିଷ ସେହି ବାଟ ଦେଇ ରକ୍ତରେ ପ୍ରବେଶ କରେ ଓ ଜଟିଳତା ସୃଷ୍ଟି କରେ ।

## ବିଷର ଉପାଦାନ :

ସାଧାରଣ ଭାବରେ ଦେଖିବାକୁ ଗଲେ ସାପ ବିଷ ବହୁ ପ୍ରକାର ପୁଷ୍ଟିସାର ଜାତୀୟ ଉପାଦାନମାନଙ୍କର ଏକ ମିଶ୍ରଣ । ସାପ ବିଷରେ କେତେକ ଧାତବ ଦ୍ରବ୍ୟ, ସ୍ନେହସାର ଓ ଶ୍ୱେତସାର ଜାତୀୟ ଉପାଦାନ ମଧ ରହିଥାଏ । ତା ସାଙ୍ଗକୁ ରହିଥାଏ ବହୁ ଏନ୍‌ଜାଇମ୍ ବା ବିପାଚକ । ଏହି ବିପାଚକ ଗୁଡ଼ିକ ଶରୀରର ବହୁ ଜଟିଳ ଉପାଦାନକୁ ସରଳ ଉପାଦାନରେ ପରିଣତ କରିଦେଇ କ୍ଷତିକାରୀ ପ୍ରଭାବ ପକାଇ ଥାଆନ୍ତି । ସାପ ବିଷରେ ରହିଥିବା ବିଭିନ୍ନ ଉପାଦାନମାନଙ୍କ ମଧରୁ କୌଣସି ଏକ ନିର୍ଦ୍ଦିଷ୍ଟ ଉପାଦାନକୁ ବିଷ ପ୍ରଭାବ ପାଇଁ ଦାୟୀବୋଲି କୁହାଯାଇ ପାରିବ ନାହିଁ । ବରଂ ବିଷରେ ରହିଥିବା ଉପାଦାନ ଗୁଡ଼ିକର ପାରସ୍ପରିକ କ୍ରିୟା ବିଷାକ୍ତ ପ୍ରଭାବ ପାଇଁ ମୁଖ୍ୟତଃ ଦାୟୀ ।

ଗୋଖର ସାପର ବିଷ ଅପେକ୍ଷା ବୋଡ଼ା ସାପର ବିଷ ଅଧିକ ଅମ୍ଳ । ସାପ ବିଷକୁ ଶୁଷ୍କ ଅବସ୍ଥାରେ ଶୀତଳ ପରିବେଶରେ ରଖିଲେ ଏହାର ପ୍ରଭାବ ବହୁଦିନ ଧରି ଅକ୍ଷତ ରହିଥାଏ । ଗବେଷଣାରୁ ଜଣାପଡ଼ିଛି ଯେ, ଗୋଖର ସାପର ବିଷରେ ଯବକ୍ଷାରଜାନର ପରିମାଣ ଶତକଡ଼ା ୧୬.୮ ଭାଗ ହୋଇଥିବା ସ୍ଥଳେ ବୋଡ଼ା ସାପର ବିଷରେ ଏହାର ପରିମାଣ ଶତକଡ଼ା ୧୫.୮ ଭାଗ । ଫସ୍‌ଫରସ୍‌ର ପରିମାଣ ୧୦୦ ମିଲିଗ୍ରାମ ବିଷର ପିଛା ପ୍ରାୟ ୧୦ ମିଲିଗ୍ରାମ ହୋଇଥିବା ସ୍ଥଳେ ବୋଡ଼ା ସାପର ବିଷରେ ଏହାର ପରିମାଣ ୧୩ ମିଲିଗ୍ରାମ । ଶହେ ମିଲିଗ୍ରାମ୍ ବୋଡ଼ା ସାପର ବିଷରେ କ୍ଲୋରାଇଡ୍‌ର ପରିମାଣ ୨୯୦ ମିଲିଗ୍ରାମ୍, ସୋଡ଼ିୟମ୍‌ର ପରିମାଣ ୧୪୨୦ ମିଲିଗ୍ରାମ, କ୍ୟାଲ୍‌ସିୟମ୍‌ର ପରିମାଣ ୮୬୦ ମିଲିଗ୍ରାମ ଓ କୋବାଲଟ୍‌ର ପରିମାଣ ୧୬ ମିଲିଗ୍ରାମ୍ ।

ଗୋଖର ସାପର ବିଷରେ ନ୍ୟୁରୋଟକ୍ସିନ୍ ନାମକ ପୁଷ୍ଟିସାର ଉପାଦାନର ପରିମାଣ ବେଶୀ । ନ୍ୟୁରୋ ଅର୍ଥ ସ୍ନାୟୁ ଓ ଟକ୍ସିନ୍ ଅର୍ଥ ବିଷ । ତେଣୁ ନ୍ୟୁରୋଟକ୍ସିନ୍ ଏକ ସ୍ନାୟୁ ବିଷ । ଏଥିରେ ୭୧ଟି ଆମିନୋ ଏସିଡ୍ ରହିଛି । ଏହି ବିଷ ଶରୀରର ସ୍ନାୟୁମାନଙ୍କ ଉପରେ ପ୍ରତିକୂଳ ପ୍ରଭାବ ପକାଇଥାଏ । ଏହାର ପ୍ରଭାବରେ ମାଂସପେଶୀ ସଙ୍କୁଚିତ ହେବାର କ୍ଷମତା ହରାଏ । ଛାତି ଓ ପେଟକୁ ଅଲଗା କରୁଥିବା ମଧ୍ୟଛଦାକୁ ଦୁର୍ବଳ କରିଦେବା ଦ୍ୱାରା ସାପ କାମୁଡ଼ା ରୋଗୀ ନିଃଶ୍ୱାସ ପ୍ରଶ୍ୱାସ ନେଇପାରେ ନାହିଁ ।

ସାପ ବିଷରେ ମଧ୍ୟ ରହିଛି କାର୍ଡ଼ିଓଟକ୍ସିନ୍ । ଏହା ହୃତ୍‌ପିଣ୍ଡ ଉପରେ ପ୍ରଭାବ ପକାଇଥାଏ । ଏହି ଉପାଦାନ ରକ୍ତରେ ମିଶିଗଲେ ରକ୍ତଚାପ କମିଯାଏ ।

ସାପରେ ଥିବା ହେମୋଲାଇସିନ୍ ନାମକ ଉପାଦାନ ରକ୍ତରେ ଥିବା ଲୋହିତ ରକ୍ତ କଣିକା ଗୁଡ଼ିକୁ ନଷ୍ଟ କରିଦିଏ । ଫଳରେ ଲୋହିତ ରକ୍ତ କଣିକା ଗୁଡ଼ିକ ଫାଟିଯାଇ ତା' ଭିତରେ ଥିବା ହେମୋଗ୍ଲୋବିନ୍ ପଦାକୁ ବାହାରି ଆସେ ।

ସାପ ବିଷରେ ମଧ୍ୟ କୋଆଗୁଲିନ୍ ନାମକ ଉପାଦାନ ଥାଏ । ଏହା ରକ୍ତକୁ ଜମାଟ ବାନ୍ଧିଦିଏ । ହେମୋଲାଇସିନ୍‌ର ବିପରୀତଧର୍ମୀ ଏହି ଉପାଦାନ ମଧ୍ୟ ସାପ ବିଷରେ ରହିଛି । କୋଆଗୁଲିନ୍‌ର ପ୍ରଭାବରେ ରକ୍ତ ଜମାଟ ବାନ୍ଧି ଯାଉଥିବା ସ୍ଥଳେ ଏହାର ବିପରୀତ ଧର୍ମୀ ଉପାଦାନ ରକ୍ତ ଜମାଟ ବାନ୍ଧିବା ପ୍ରକ୍ରିୟାକୁ ବାଧାଦିଏ, ଫଳରେ ବିଷକ୍ରିୟା ଯୋଗୁଁ ସାପକାମୁଡ଼ାର କ୍ଷତ ସ୍ଥାନରୁ ରକ୍ତ ଝରିଚାଲିଥାଏ ।

କ୍ରୋଟାମିନ୍ ନାମକ ଉପାଦାନ ଅଙ୍ଗ ପ୍ରତ୍ୟଙ୍ଗରେ ପକ୍ଷାଘାତ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଶ୍ୱାସକ୍ରିୟାରେ ଭାଗନେଉଥିବା ମାଂସପେଶୀଗୁଡ଼ିକୁ ଦୁର୍ବଳ କରିଦିଏ । ଫଳରେ ରୋଗୀ ନିଶ୍ୱାସ ପ୍ରଶ୍ୱାସ ନେବାରେ କଷ୍ଟ ବୋଧକରେ ।

ସାପମାନଙ୍କର ବିଷ ମାଂସପେଶୀର କୋଷ ଗୁଡ଼ିକୁ ନଷ୍ଟ କରିଦିଏ । ଫଳରେ ସେଥିରୁ ମାୟୋଗ୍ଲୋବିନ୍ ନାମକ ଉପାଦାନ ବାହାରି ରୋଗୀର ପରିସ୍ରାରେ ନିଷ୍କାସିତ ହୁଏ । ପରିସ୍ରାରେ ମାୟୋଗ୍ଲୋବିନ ନିଷ୍କାସିତ ହୋଇଥିଲେ ପରିସ୍ରା ଲାଲରଙ୍ଗ ଦେଖାଯାଏ ଓ କିଛି ସମୟ ପରେ ବୃକ୍‌କ ଦୁଇଟି କାମ କରିବାକୁ ଅକ୍ଷମ ହୋଇପଡ଼େ । ତେଣୁ ରୋଗୀର ପରିସ୍ରା ବନ୍ଦ ହୋଇଯାଏ ।

ସାପ ବିଷରେ ରହିଥିବା ଅନ୍ୟକେତେକ ଉପାଦାନ ଯୋଗୁଁ ରୋଗୀଠାରେ ଆଲର୍ଜିର ଲକ୍ଷଣମାନ ମଧ୍ୟ ପ୍ରକାଶ ପାଇଥାଏ ।

• ପୁଷ୍ଟିସାରୀୟ ଉପାଦାନ ବ୍ୟତୀତ ସାପବିଷରେ ବିଭିନ୍ନ ପ୍ରକାରର ଏନ୍‌ଜାଇମ୍ ବା ବିପାଚକ ରହିଥିବାର ପ୍ରମାଣିତ ହୋଇଛି । ସେଗୁଡ଼ିକ ମଧ୍ୟରେ ପ୍ରୋଟିଏଜ୍, ଫସ୍‌ଫୋଲାଇପେଜ୍, କୋଲିନ୍‌ଇଷ୍ଟରେଜ୍, ଆମିନୋ ଅକ୍‌ସିଡ଼େଜ୍, ନ୍ୟୁକ୍ଲିଏଜ୍, ହାଲୁରୋନାଇଡ଼େଜ୍, ଏବଂ ଫାଇରୋଫସ୍‌ଫାଟେଜ ପ୍ରଧାନ ।

ପ୍ରୋଟିଏଜ୍‌ର ପ୍ରଭାବରେ ସାପକାମୁଡ଼ିଥିବା ସ୍ଥାନର ତନ୍ତୁ ନଷ୍ଟ ହୋଇଯାଏ । ଏହା ସଡେ ଯେପରି ତନ୍ତୁ ଗୁଡ଼ିକୁ ଜୀର୍ଣ୍ଣ କରିଦିଏ । ପ୍ରୋଟିଏଜ୍ ଯୋଗୁଁ ରକ୍ତ ମଧ୍ୟ ଜମାଟ ବାନ୍ଧିଯାଏ । ବୋଡ଼ାସାପ ବିଷର ପ୍ରୋଟିଏଜ୍ ରକ୍ତକୁ ଜମାଟ ବାନ୍ଧିଦେଇ ରକ୍ତ ସଞ୍ଚାଳନ ପ୍ରତିକ୍ରିୟାରେ ବାଧା ସୃଷ୍ଟି କରେ । ଫଳରେ ରୋଗୀର ମୃତ୍ୟୁ ଘଟିଥାଏ ।

ଫସ୍‌ଫୋଲାଇପେଜ୍ ଲୋହିତ ରକ୍ତ କଣିକା ଗୁଡ଼ିକର ଆବରଣକୁ ନଷ୍ଟ କରିଦିଏ । ଫଳରେ ଲୋହିତ ରକ୍ତ କଣିକା ଗୁଡ଼ିକ ନଷ୍ଟ ହୋଇ ଯାଆନ୍ତି ।

ଏସିଟିଲ୍‌କୋଲିନ୍ ନାମକ ଉପାଦାନ ସ୍ନାୟୁର କାର୍ଯ୍ୟରେ ମୁଖ୍ୟଭୂମିକା ଗ୍ରହଣ କରିଥାଏ । ସାପ ବିଷରେ ଥିବା କୋଲିନ୍‌ଇଷ୍ଟରେଜ ବିପାଚକ ଏସିଟିଲ୍‌କୋଲିନ୍‌କୁ ନଷ୍ଟ କରିଦେବା ଦ୍ୱାରା ସ୍ନାୟୁ ଗୁଡ଼ିକର ସାଧାରଣ କାର୍ଯ୍ୟ ବ୍ୟାହତ ହୁଏ । ତେଣୁ ପକ୍ଷାଘାତର ଲକ୍ଷଣ ପ୍ରକାଶ ପାଏ ।

ବୋଡ଼ାସାପ କାମୁଡ଼ିଲେ କ୍ଷତସ୍ଥାନ ଖୁବ୍ ଚଞ୍ଚଳ ପଚିଯାଏ । କ୍ଷତସ୍ଥାନରେ ଥିବା ଜୀବକୋଷ ଗୁଡ଼ିକ ନଷ୍ଟ ହୋଇଯିବାରୁ ଏଭଳି ପରିଣାମ ସୃଷ୍ଟିହୁଏ । ବିଷରେ ରହିଥିବା ଆମିନୋଏସିଡ୍ ଅକ୍‌ସିଡ଼େଜ ଏଥିପାଇଁ ଦାୟୀ । ନ୍ୟୁକ୍ଲିଏଜ୍ ଜୀବକୋଷ ନ୍ୟଷ୍ଟି ଭିତରେ ଥିବା ଡି.ଏନ୍.ଏ. ଓ ଆର୍, ଏନ୍.ଏ.କୁ ନଷ୍ଟ କରିଦିଏ । ଗୋଖର ବିଷରେ ଏହାର ପରିମାଣ ବେଶୀ ।

ଶରୀରର ଜୀବକୋଷ ମଧ୍ୟରେ ହାଲୁରୋନିକ୍ ଏସିଡ଼୍ ନାମକ ଏକ ଉପାଦାନ ରହିଥାଏ । ସିମେଣ୍ଟ ଭଳି କାମ କରି ଏହା ଜୀବକୋଷଗୁଡ଼ିକ ବାନ୍ଧି ରଖିବାରେ ସାହାଯ୍ୟ କରେ । କିନ୍ତୁ ବିଷରେ ଥିବା ହାଲୁରୋନିଡେଜ୍ ହାଲୁରୋନିକ ଏସିଡକୁ ନଷ୍ଟ କରିଦିଏ । ଏହି କାରଣରୁ ତନ୍ତୁ ମଧ୍ୟରେ ବିଷ ଚରିଯିବାରେ କୌଣସି ପ୍ରତିବନ୍ଧକ ରହେନାହିଁ । ତେଣୁ ବିଷର ପ୍ରଭାବ ତ୍ୱରାନ୍ୱିତ ହୋଇଯାଏ ।

ଏହି ପରିପ୍ରେକ୍ଷୀରେ ଦେଖିଲେ, ସାପ ବିଷରେ ରହିଥିବା ବିଭିନ୍ନ ଉପାଦାନ ଜୀବକୋଷକୁ ନଷ୍ଟ କରିଦିଏ, ବିଷକୁ ପ୍ରସାର ଲାଭ କରିବାରେ ସାହାଯ୍ୟ କରେ ଓ ଜୀବକୋଷର ସ୍ୱାଭାବିକ କ୍ରିୟାପ୍ରକ୍ରିୟାକୁ ବ୍ୟାହତ କରିପକାଏ ।

ମୋଟାମୋଟି ଭାବରେ ଦେଖିଲେ ଗୋଖର ଓ ଚିତିସାପର ବିଷରେ ସ୍ନାୟୁ ବିଷର ପରିମାଣ ଅଧିକ । ବୋଡ଼ାସାପର ବିଷ କ୍ଷତ ସ୍ଥାନକୁ ଚଞ୍ଚଳ ପଚାଇ ଦିଏ, ଫୁଲେଇଦିଏ ଓ ସେ ସ୍ଥାନରେ ରକ୍ତ ଜମାଟ ବାନ୍ଧିବା ପ୍ରକ୍ରିୟାକୁ ବ୍ୟାହତ କରିବାରୁ କ୍ଷତ ସ୍ଥାନରୁ ରକ୍ତ ସ୍ରାବ ହୋଇଥାଏ । ଏହି ବିଷ ଯୋଗୁଁ ମଧ୍ୟ ଶରୀରର ଅନ୍ୟସ୍ଥାନରୁ ରକ୍ତସ୍ରାବ ହୋଇପାରେ । ବୋଡ଼ାସାପ ବିଷର ପ୍ରଭାବରେ ପକ୍ଷାଘାତ ହେବାର ସମ୍ଭାବନା ଯଥେଷ୍ଟ ଊଣା । ବୋଡ଼ାସାପର ବିଷରେ ରହିଥିବା ହିଷ୍ଟାମିନ୍ ଓ ସିରୋଟୋନିନ୍ ନାମକ ଉପାଦାନ ଯୋଗୁଁ କ୍ଷତସ୍ଥାନରେ ଅଧିକ ଯନ୍ତ୍ରଣା ହୋଇଥାଏ ।

ଉପରୋକ୍ତ ଆଲୋଚନାକୁ ବିଚାର କଲେ ଜଣାପଡ଼େ ଯେ, ସାପବିଷକୁ ଏକ ନିର୍ଦ୍ଦିଷ୍ଟ ବିଷ ବୋଲି କୁହାଯାଇ ପାରିବ ନାହିଁ । ଏହା ବହୁ ବିଷାକ୍ତ ଉପାଦାନର ଏକ ମିଶ୍ରଣ । ଏହି ଉପାଦାନମାନଙ୍କର ପ୍ରକାର ଓ ପରିମାଣ ସବୁ ବିଷରେ ସମାନ ନୁହେଁ । ତେଣୁ ବିଭିନ୍ନ ଧରଣର ବିଷାକ୍ତ ସାପ କାମୁଡ଼ିଲେ ଉକ୍ତ ସାପବିଷରେ ରହିଥିବା ଉପାଦାନ ଓ ତାର ପରିମାଣ ଅନୁସାରେ ରୋଗୀଠାରେ ଭିନ୍ନ ଭିନ୍ନ ଲକ୍ଷଣମାନ ପ୍ରକାଶ ପାଇବା ସ୍ୱାଭାବିକ । ତେବେ ସାପ ବିଷରେ ରହିଥିବା ସମସ୍ତ ଉପାଦାନ ଓ ତାହାର ପ୍ରଭାବ ସମ୍ବନ୍ଧରେ ଆମର ଜ୍ଞାନ ଏବେ ମଧ୍ୟ ଅପରିପକ୍ୱ ।



# ସାପ ବିଷର ଉପାଦେୟତା

''ଗରଳେ କଲୁ ଅଧିକାରୀ
ସ୍ୱଭାବ ଛାଡ଼ିବି କିପରି ?''

ଏଭଳି କହି ଆମେ ସାପର ସ୍ୱଭାବର ଭୁଲ କଳନା କରି ସାପ କୁଳର ଅମର୍ଯ୍ୟାଦା କରିଥାଉ । ସତରେ କ'ଣ ସାପ ଆମର ଶତ୍ରୁ ? ହୁଏତ କେତେକ ଜାତିର ବିଷାକ୍ତ ସାପକୁ ଲକ୍ଷ୍ୟ କରି ପୂରା ସାପ ଜାତିଟାକୁ ମଣିଷର ଶତ୍ରୁ ରୂପେ ଅଭିଯୁକ୍ତ କରାଯାଉଛି । ନୋହିଲେ ସାପଟିଏ ଦେଖିଲେ ଆମ ଶରୀରର ସମସ୍ତ କୋଷ ହଠାତ୍ ବିଦ୍ରୋହ କରି ଉଠନ୍ତେ କାହିଁକି ? କିନ୍ତୁ ସାପର ସ୍ୱାଧୀନତାରେ ଆଞ୍ଚ୍ ନ ଆଣିଲେ ସେ ଆମ ଉପରେ କେବେ ଚୋଟ ବସାଏନି । ବୃଥାଟାରେ ସେ ତା'ର ଏହି ଅସ୍ତ୍ରକୁ ପ୍ରୟୋଗ କରେନି । ଆତ୍ମରକ୍ଷା ପାଇଁ ହିଁ ସାପ ଅନ୍ୟକୁ କାମୁଡ଼ିବାକୁ ବାଧ ହୋଇଥାଏ । ତା' ସ୍ୱାର୍ଥରେ ବାଧା ନ ଦେଲେ ସେ ଆମର ଅମଙ୍ଗଳ ଚିନ୍ତା କରେନାହିଁ । ତାକୁ ତା' ବାଟରେ ଛାଡ଼ିଦେଲେ ସେ ଆମକୁ ଆମ ବାଟରେ ଛାଡ଼ିଦିଏ ।

ସତକଥା କହିଲେ ସାପ ବି ଏକ ମୂଲ୍ୟବାନ ସମ୍ପଦ । ସାପ ମଣିଷର ଖାଦ୍ୟ ରୂପେ ବ୍ୟବହୃତ ହୁଏ ଓ ସାପକୁ ପୋଷି ମଣିଷ ତାକୁ ନିଜ ସ୍ୱାର୍ଥରେ ଲଗାଇଥାଏ । ତେବେ ଆଧୁନିକ ରୋଗ ଚିକିତ୍ସାରେ ସାପ ବିଷର ଭୂମିକା କ୍ରମେ ସ୍ୱୀକୃତି ପାଉଛି ।

ବହୁ ବର୍ଷ ତଳେ ଆମେରିକାର ଟେକ୍ସାସ୍‌ରେ ଜଣେ ଲୋକକୁ ର୍‍ୟାଟ୍‌ଲସ୍ନେକ୍ କାମୁଡ଼ିଲା । ଏହି ସାପର ବିଷ ଅତି କ୍ଷତିକାରକ । କିନ୍ତୁ ଯେଉଁ ଲୋକକୁ ସାପ କାମୁଡ଼ିଥିଲା, ସେ କିଛିଦିନ ଧରି ସଙ୍କଟଜନକ ଅବସ୍ଥାରେ ରହିଲା ସତ, କିନ୍ତୁ କୌଣସି ପ୍ରକାରେ ବଞ୍ଚିଗଲା । ସେହି ଲୋକଟିର ଥିଲା ଅପସ୍ମାର ରୋଗ । ଅପସ୍ମାର ରୋଗରେ ରୋଗୀକୁ ବାତ ମାରିଥାଏ । ଏହି ରୋଗକୁ ସନ୍ତୋଷଜନକ ଭାବରେ ଆରୋଗ୍ୟ କରାଯାଇପାରୁନାହିଁ । ତେବେ ବଡ଼ ଆଶ୍ଚର୍ଯ୍ୟର କଥା ଯେ ର୍‍ୟାଟ୍‌ଲସ୍ନେକ୍ କାମୁଡ଼ିଥିବା ରୋଗୀଟି ଅପସ୍ମାର ରୋଗରୁ ଆରୋଗ୍ୟ ହୋଇଗଲା । ଡାକ୍ତରମାନେ ଏଭଳି ଘଟଣାକୁ ବିଶ୍ୱାସ କରିପାରିଲେ ନାହିଁ । ର୍‍ୟାଟଲ୍‌ସ୍ନେକ୍ ବିଷର କ'ଣ ଅପସ୍ମାର ରୋଗ ଭଲ କରିଦେବାର ଗୁଣ ଅଛି ? ଅନୁସନ୍ଧାନ ଆରମ୍ଭ ହୋଇଗଲା । ବହୁବର୍ଷ ଧରି ଗବେଷଣା ଚାଲିଲା । ସେହି ଗବେଷଣାରୁ ଜଣାପଡ଼ିଲା ଯେ ର୍‍ୟାଟଲ ସ୍ନେକ୍‌ର ବିଷକୁ ଅପସ୍ମାର ରୋଗ ଚିକିତ୍ସାରେ ବ୍ୟବହାର କରିହେବ । ଏବେ ସେହି ବିଷରୁ ଅପସ୍ମାର ରୋଗ ଚିକିତ୍ସାର ଔଷଧ ତିଆରି ହେଉଛି ।

ଆପଣମାନେ ପୂର୍ବରୁ ଜାଣିଛନ୍ତି ଯେ ବିଷାକ୍ତ ସାପ କାମୁଡ଼ିଲେ ରୋଗୀର ରକ୍ତ ଜମାଟବାନ୍ଧିଯାଏ ଓ ଏହି କାରଣରୁ ସାପ କାମୁଡ଼ା ରୋଗୀ ମୃତ୍ୟୁ ମୁଖରେ ପଡ଼େ । ସାପ ବିଷରେ ରହିଥିବା କେତେକ ଉପାଦାନ ରକ୍ତ ଜମାଟ ବାନ୍ଧିବା ପ୍ରକ୍ରିୟାରେ ସାହାଯ୍ୟ କରିଥାଏ । ତେଣୁ କୌଣସି ରୋଗରେ ଦେହର ବିଭିନ୍ନ ସ୍ଥାନରୁ ରକ୍ତସ୍ରାବ ହେଉଥିଲେ ଏକ ନିର୍ଦ୍ଦିଷ୍ଟ ପ୍ରଣାଳୀରେ ପ୍ରସ୍ତୁତ ସାପ ବିଷକୁ ଔଷଧ ରୂପେ ବ୍ୟବହାର କରାଯାଇପାରେ । ଏହାର ପ୍ରଭାବରେ ରକ୍ତ ଜମାଟ ବାନ୍ଧିବା ପ୍ରକ୍ରିୟା ତ୍ୱରାନ୍ୱିତ ହୋଇ ଅସ୍ୱାଭାବିକ ରକ୍ତସ୍ରାବ ବନ୍ଦହୋଇଯାଏ । ତେବେ ଏଭଳି ଔଷଧ ପ୍ରୟୋଗ କରିବାରେ ସାବଧାନତା ଲୋଡ଼ା । ଔଷଧର ମାତ୍ରା ବେଶି ହୋଇଗଲେ ରକ୍ତ ନଳୀରେ ରକ୍ତ ଜମାଟ ଖଣ୍ଡ ଅଟକି ଯିବାରୁ ରକ୍ତ ସଞ୍ଚାଳନରେ ବାଧା ପଡ଼ି ରୋଗୀ ମୃତ୍ୟୁବରଣ କରିପାରେ ।

କୁଷ୍ଠରୋଗ, ଗଣ୍ଠିବାତ ଓ ଶ୍ୱାସ ରୋଗରେ ସାପବିଷରୁ ତିଆରି ଔଷଧ ପ୍ରୟୋଗ କରାଯାଇ ସୁଫଳ ମିଳିଛି । କେତେକ ଧରଣର କର୍କଟ ରୋଗରେ ମଧ୍ୟ ସାପ ବିଷ ପ୍ରୟୋଗ କରାଯାଉଛି । ତାହାଛଡ଼ା କେତେକ ନିର୍ଦ୍ଦିଷ୍ଟ ରକ୍ତ ରୋଗର ନିର୍ଣ୍ଣୟ ପାଇଁ ମଧ୍ୟ ସାପ ବିଷର ଉପଯୋଗ କରାଯାଇଥାଏ । ଏହି ପରିପ୍ରେକ୍ଷୀରେ ଦେଖିଲେ ରୋଗୀ ଚିକିତ୍ସା କ୍ଷେତ୍ରରେ ବର୍ଷକୁ ବର୍ଷ ଅଧିକରୁ ଅଧିକ ପରିମାଣ ସାପ ବିଷ ଲୋଡ଼ା ପଡୁଛି । କିନ୍ତୁ ସାପ ବିଷକୁ ସଂଗ୍ରହ କରାଯିବ କିପରି ? ବୈଜ୍ଞାନିକମାନେ ତ ଏପର୍ଯ୍ୟନ୍ତ ଗବେଷଣାଗାରରେ ସାପବିଷକୁ ତିଆରି କରି ପାରୁନାହାନ୍ତି । ତେଣୁ ବିଷାକ୍ତ ସାପଠାରୁ ବିଷ ସଂଗ୍ରହ କରିବା ବ୍ୟତୀତ ଅନ୍ୟ ପନ୍ଥା ନାହିଁ ।

ବ୍ରାଜିଲ ଦେଶର ବୁଟାଣ୍ଟାନ୍ ପୃଥିବୀର ସର୍ବପ୍ରଥମ ଓ ସର୍ବବୃହତ୍ ସର୍ପ ଉଦ୍ୟାନ । ଏହା ସ୍ଥାପିତ ହୋଇଥିଲା ୧୯୦୧ ମସିହାରେ । ସେତେବେଳେ ସାପକାମୁଡ଼ାରେ ବ୍ରାଜିଲର ବହୁତଲୋକ ପ୍ରାଣ ହରାଉଥିଲେ । ସାପ ବିଷ ସଂଗ୍ରହ କରି ବିଷହାରକ ଔଷଧ ତିଆରି କରିବା ଉଦ୍ଦେଶ୍ୟରେ ବ୍ରାଜିଲ୍‌ର ଲୋକମାନେ ନିଜ ନିଜ ଭିତରେ ଚାନ୍ଦା ଭେଦା କରି ସର୍ପ ଉଦ୍ୟାନ ପାଇଁ ପାଣ୍ଠି ଯୋଗାଡ଼ କରିଥିଲେ । ବ୍ରାଜିଲ୍‌ର ବିଭିନ୍ନ ସ୍ଥାନରୁ ସ୍ୱତନ୍ତ୍ର ଧରଣର ବାକ୍‌ସରେ ଭଳିକି ଭଳି ସାପ ସର୍ପ ଉଦ୍ୟାନକୁ ଅଣାଯାଉଥିଲା । ସାପ ଥିବା ବାକ୍‌ସକୁ ପୋଷ୍ଟ ଅଫିସରେ ଦେଇଦେଲେ ବିନା ମାହାସୁଲରେ ଡାକ ବିଭାଗ ତାକୁ ସର୍ପ ଉଦ୍ୟାନକୁ ପଠାଇ ଦେଉଥିଲେ । ଏବେତ ବହୁ ଦେଶରେ ସର୍ପ ଉଦ୍ୟାନମାନ ପ୍ରତିଷ୍ଠିତ ହୋଇ ସର୍ପ ବିଷ ସଂଗ୍ରହ ଚାଲିଛି । ସରକାରୀ ସଂସ୍ଥାକୁ ଛାଡ଼ିଦେଲେ ବହୁ ଲୋକ ନିଜେ ନିଜେ ସାପ ପୋଷିବାକୁ ଆରମ୍ଭ କଲେଣି । ସେମାନେ ସାପ ବିଷ ସଂଗ୍ରହ କରି ବିଷକୁ ବିକି ଯଥେଷ୍ଟ ଅର୍ଥ ଉପାର୍ଜନ କରୁଛନ୍ତି । ଆମ ଦେଶରେ ବମ୍ବେ ସ୍ଥିତ 'ହାଫ୍‌କିନ୍' ଅନୁଷ୍ଠାନରେ ସାପ

ବିଷରୁ ବିଷହାରକ ଔଷଧ ବା ଆଣ୍ଟିଭେନିନ୍ ତିଆରି ହୋଇ ସାପ କାମୁଡ଼ା ରୋଗୀଙ୍କର ଚିକିତ୍ସାରେ ବ୍ୟବହୃତ ହେଉଛି । ଏହି ଦୃଷ୍ଟିରୁ ଦେଖିଲେ ସାପ ବିଷକୁ ଅଲୋଡ଼ା ବୋଲି ବିଚାରିବା ଠିକ୍ ନୁହେଁ । ଏହା ଡାକ୍ତର ରୋଗୀ ଉଭୟଙ୍କ ପାଇଁ ଏକ ମହାର୍ଘ ଦ୍ରବ୍ୟ ।

ସାପ ଓ ସାପ ବିଷର ଉପଯୋଗିତାକୁ ଲକ୍ଷ୍ୟ କରି ଜଣେ ପ୍ରଖ୍ୟାତ ସର୍ପ ବିଶେଷଜ୍ଞ ଭାଷଣ ପ୍ରସଙ୍ଗରେ ସବୁବେଳେ କହିଥାନ୍ତି–

''ମୋର ପ୍ରିୟ ଭାଇ ଓ ଭଉଣୀମାନେ,

ସାପ ଆପଣଙ୍କର ଅତି ବିଶ୍ୱସ୍ତ ବନ୍ଧୁ । ବନ୍ଧୁର ଆଦର କରନ୍ତୁ ।''



# ସାପ କାମୁଡ଼ାର ଚିକିତ୍ସା

ଜ୍ୟାକ୍‌ସିଲ୍ ଦକ୍ଷିଣ ଆଫ୍ରିକାର ଜଣେ ସର୍ପ ବିଶେଷଜ୍ଞ । ତାଙ୍କୁ କାମୁଡ଼ିଲା କଳା ମାମ୍ବା । ମାମ୍ବା ସାପ କାମୁଡ଼ିବାରୁ ପ୍ରାୟ କେହି ବଞ୍ଚନ୍ତି ନାହିଁ । ମାମ୍ବାର ବିଷ ଏତେ ବିଷାକ୍ତ ଯେ ସେ କାମୁଡ଼ିବାର ମାତ୍ର ପାଞ୍ଚ ମିନିଟ ସମୟ ଭିତରେ ଲୋକ ମରିଯାଏ । କିନ୍ତୁ ସିଲ୍ ନ ମରି ବଞ୍ଚିଗଲେ । ଆଶ୍ଚର୍ଯ୍ୟ ଲାଗିଲେ ବି ଏହା ସମ୍ଭବ ହେଲା କିପରି ?

ଗାଡ଼ିରେ ବସେଇ ସିଲ୍‌ଙ୍କୁ ଡାକ୍ତରଖାନାରେ ପହଞ୍ଚେଇବାକୁ ଲାଗିଥିଲା ୪୫ ମିନିଟ୍ । ଡାକ୍ତରଖାନାରେ ପହଞ୍ଚିଲାବେଳକୁ ତାଙ୍କର ମର ନମର ଅବସ୍ଥା । ତାଙ୍କର ଗୋଡ଼ହାତ ଅଚଳ ହୋଇ ପଡ଼ିଥିଲା । ସେ ପ୍ରାୟ ଅଚେତ ହୋଇ ପଡ଼ିଥିଲେ । ଛଅ ଦିନ କାଳ ମରଣ ସାଙ୍ଗରେ ଯୁଝି ଯୁଝି ସିଲ୍ ବଞ୍ଚିଗଲେ । ଏହାର ରହସ୍ୟ କଅଣ ବୋଲି ପଚାରିଲେ ସିଲ୍ କହନ୍ତି, ''ମାମ୍ବା କାମୁଡ଼ିଛି ବୋଲି ମୁଁ ଛାନିଆ ହୋଇଗଲିନି । 'ମୁଁ ଯେ ନିଶ୍ଚୟ ମରିଯିବି'– ଏପରି ଧାରଣା ମୁଣ୍ଡକୁ ଆଣିଲିନି । ମୁଁ ନିଜେ ନିଜେ କାମୁଡ଼ା ଜାଗାକୁ ସଫା କରି ପଟି ବାନ୍ଧିଦେଲି । ହାତେ ହାତେ 'ଆଣ୍ଟିଭେନମ୍' ଇଂଜେକ୍‌ସନ ନେଇଗଲି । ମୋ' ମନରେ ଟିକିଏ ବି ଡ଼ର ନଥିଲା । ସାପ କାମୁଡ଼ିଲେ ଛାନିଆ ହୋଇ ନ ଯିବା ହିଁ ସାପ କାମୁଡ଼ା ଚିକିତ୍ସାର ପ୍ରଧାନ ଓ ପ୍ରଥମ ନିୟମ ।''

## ସାପକାମୁଡ଼ାର ଲକ୍ଷଣ :

ସାଧାରଣତଃ ଆମ୍ଭମାନଙ୍କର ଧାରଣ ଯେ ସାପ କାମୁଡ଼ିଲେ ବଞ୍ଚିବାର ଆଶାନାହିଁ । ଏଇଆ ଭାବି ଆମେ ଡରିଯାଉ । କିନ୍ତୁଆମେ ଦେଖିବାକୁ ପାଉଥିବା ଅଧିକାଂଶ ସାପର ତ ବିଷ ନାହିଁ । ତାହାଛଡ଼ା ନାଗ, ତମ୍ପ, ବୋଡ଼ା ଓ ଚିତିଭଳି ଯେଉଁ ସାପମାନଙ୍କର ବିଷ ଅଛି, ସେମାନେ କାଁ ଭାଁ ତ ଆମ ଆଖିରେ ପଡ଼ନ୍ତି । ପୁଣି ବିଷାକ୍ତ ସାପ କାମୁଡ଼ିଥିଲେ ବି ମାତ୍ର ଅଧା ଅଧି ରୋଗୀଙ୍କ କ୍ଷେତ୍ରରେ ସାପ କାମୁଡ଼ାର ଲକ୍ଷଣ ପ୍ରକାଶ ପାଇଥାଏ । ସେ ଲକ୍ଷଣ ନିହାତି ମାମୁଲି ଧରଣର ମଧ ହୋଇପାରେ । ତେଣୁ ସତ କଥା କହିଲେ ଖୁବ୍ ଅଳ୍ପ ରୋଗୀଙ୍କ କ୍ଷେତ୍ରରେ ହିଁ ସାପବିଷ ଯୋଗୁଁ ରୋଗୀ ମୃତ୍ୟୁ ମୁଖରେ ପଡ଼େ । ରୋଗୀର ସ୍ୱାସ୍ଥ୍ୟ ଭଲ ଥିଲେ ଓ ସେ ସୁସ୍ଥସବଳ ହୋଇଥିଲେ ତା' ଉପରେ ସାପ ବିଷର ପ୍ରଭାବ ମଧ କମ୍ । ତେଣୁ ସାପ କାମୁଡ଼ିଲେ ରୋଗୀ ନିଶ୍ଚୟ ମରିଯିବ – ଏଭଳି ଧାରଣା କରିବା ସମ୍ପୂର୍ଣ୍ଣ ଭୁଲ୍ । ଅନ୍ୟ ପକ୍ଷରେ ଦେଖିଲେ, ସାପ କାମୁଡ଼ିଲେ କୌଣସି ଲକ୍ଷଣ ପ୍ରକାଶ ନ ପାଇଲେ ଯେ ସାପଟି ବିଷାକ୍ତ ନୁହେଁ, ତାହା ଭାବିନେବା ମଧ ଠିକ୍ ନୁହେଁ ।

ସାପ କାମୁଡ଼ା ଜାଗା ଓ ଲକ୍ଷଣକୁ ବିଚାରକୁ ନେଇ କେଉଁ ଧରଣର ସାପ କାମୁଡ଼ିଛି ତାହା ଜାଣିବା ଡାକ୍ତରମାନଙ୍କ ପକ୍ଷେ ବିଶେଷ କଷ୍ଟ ନୁହେଁ । ମୋଟାମୋଟି ଭାବରେ ଦେଖିଲେ ନାଗ, ତମ୍ପ ଓ ଚିତି କାମୁଡ଼ି ଥିଲେ ରୋଗୀର ନିଃଶ୍ୱାସ ପ୍ରଶ୍ୱାସ ନେବାରେ କଷ୍ଟ ହୁଏ । ସେ ପାଣି କି ଖାଦ୍ୟପଦାର୍ଥ ଢୋକିବାରେ କଷ୍ଟ ଅନୁଭବ କରେ । କେହି କେହି କଥା କହି ପାରନ୍ତି ନାହିଁ । କାଶି ପାରନ୍ତି ନାହିଁ । ଆଖିପତା ଉଠେଇ ପାରନ୍ତି ନାହିଁ । ଆଖିପତା ମନକୁ ମନ ପଡ଼ିଯାଏ । ଏହିସବୁ ଲକ୍ଷଣ ସ୍ନାୟୁମାନଙ୍କ ଉପରେ ବିଷର ପ୍ରଭାବ ଯୋଗୁଁ ହୋଇଥାଏ । ଅନ୍ୟପକ୍ଷରେ ବୋଡ଼ା କାମୁଡ଼ିଥିଲେ କାମୁଡ଼ା ଜାଗା ହଠାତ୍ ଫୁଲିଯାଏ । ବିନ୍ଧାଛିଟିକା କରେ । ବିଷକ୍ରିୟା ଯୋଗୁଁ ରକ୍ତ ପାଣି ଫାଟିଯାଏ । ରକ୍ତ ଜମାଟ ବାନ୍ଧିପାରେ ନାହିଁ । ତେଣୁ ସାପ କାମୁଡ଼ା ଜାଗାରୁ ମନକୁ ମନ ରକ୍ତ ବୋହି ଚାଲେ । ରୋଗୀର ପାଟିରୁ ମଧ୍ୟ ରକ୍ତ ବାହାରେ । ତା'ର କଫରେ ରକ୍ତ ପଡ଼ିପାରେ । ଝାଡ଼ା ଓ ପରିସ୍ରାରେ ରକ୍ତ ଆସି ପାରେ । ସମୁଦ୍ର ସାପ କାମୁଡ଼ିଥିଲେ ମାତ୍ର ଘଣ୍ଟାଏ ଦେଢ଼ଘଣ୍ଟା ଭିତରେ ଦେହହାତ ଘୋଳାବିନ୍ଧାକରେ । ମାଂସପେଶୀର ସଙ୍କୋଚନ ଯୋଗୁଁ ବେକ ବଙ୍କା କରି ହୁଏନାହିଁ । ଜିଭ ଟାଣ ହୋଇଯାଏ । କାନ୍ଧ ଉଠେଇ ହୁଏ ନାହିଁ । ଗୋଡ଼ ହାତ ନାଠି ହୋଇଯାଏ । କଥା କହିବା ଓ ଖାଦ୍ୟ ଢୋକିବାରେ କଷ୍ଟ ହୁଏ । ନାଲି ରଙ୍ଗର ପରିସ୍ରା ହୁଏ । ଏହିସବୁ ଲକ୍ଷଣ ସତ୍ତ୍ୱେ ବିଷାକ୍ତ ସାପ କାମୁଡ଼ିବା ଯୋଗୁଁ କେତେ ପରିମାଣର ବିଷ ରୋଗୀ ଦେହ ଭିତରକୁ ଯାଇଛି, ତାହା ଠିକ୍ ଭାବରେ ଜାଣିବା ଡାକ୍ତରଙ୍କ ପକ୍ଷେ ସବୁବେଳେ ସମ୍ଭବ ନୁହେଁ । ତେଣୁ ସାପ କାମୁଡ଼ିଥିଲେ ବିଳମ୍ବ ନକରି ରୋଗୀର ଚିକିତ୍ସା ଆରମ୍ଭ କରିଦେବା ଦରକାର । ନୋହିଲେ ଏହାର ପରିଣାମ ଗୁରୁତର ହୋଇପଡ଼ିବାର ସମ୍ଭାବନା ଥାଏ ।

ସାପ କାମୁଡ଼ା ରୋଗୀକୁ ଚିକିତ୍ସା କରିବାର ପ୍ରଣାଳୀକୁ ସାଧାରଣତଃ ତିନି ଭାଗରେ ବିଭକ୍ତ କରାଯାଏ । ଯଥା–

**(୧) ପ୍ରାଥମିକ ଚିକିତ୍ସା**

**(୨) ଆଣ୍ଟିଭେନମ୍ ଦ୍ୱାରା ଚିକିତ୍ସା**

**(୩) ଆନୁଷଙ୍ଗିକ ଚିକିତ୍ସା**

## ୧। ପ୍ରାଥମିକ ଚିକିତ୍ସା :

ପ୍ରାଥମିକ ଚିକିତ୍ସା ନିମନ୍ତେ ଡାକ୍ତରଙ୍କର ଆବଶ୍ୟକତା ନାହିଁ । ଯେ କୌଣସି ସ୍ଥାନରେ ଏଭଳି ଚିକିତ୍ସା ପ୍ରଦାନ କରିହେବ । କହିବାକୁ ଗଲେ ସାପକାମୁଡ଼ା ରୋଗୀର ଭବିଷ୍ୟତ ଏହି ପ୍ରାଥମିକ ଚିକିତ୍ସା ଉପରେ ବହୁଳାଂଶରେ ନିର୍ଭରଶୀଳ ।

କ)	କାହାରିକୁ ସାପ କାମୁଡ଼ିଲେ ସେ ଦୌଡ଼ି ନ ପଳେଇ ସାହାଯ୍ୟ ନିମନ୍ତେ ଅନ୍ୟମାନଙ୍କ ଡାକ ପକେଇବ । ସାପ କାମୁଡ଼ିଛି ବୋଲି ହଠାତ୍ ଛାନିଆ ହୋଇଯିବନି । ଆମ ଦେଶରେ ସାପ ବିଷ ଯୋଗୁଁ ଯେତେ ଲୋକ ନ ମରନ୍ତି, ସାପ କାମୁଡ଼ାରେ ଡରିଯାଇ ତାହାଠାରୁ ବହୁଗୁଣ ଅଧିକ ଲୋକ ମରିଥାନ୍ତି ।

ଖ)	ନିଜେ ଧୈର୍ଯ୍ୟଧରି ସାପକାମୁଡ଼ା ରୋଗୀର ପ୍ରାଥମିକ ଚିକିତ୍ସା କରିବ । ରୋଗୀକୁ ଡରେଇ ଦେବନି କି ନିଜେ ଡରି ଯିବନି । ରୋଗୀକୁ ଭରସା ଓ ଆଶ୍ୱାସନା ଦେବ । ଭରସା ଓ ଆଶ୍ୱାସନା ଠାରୁ ବଳି ଚିକିତ୍ସା ନାହିଁ ।

ଗ)	ରୋଗୀକୁ ଆଦୌ ଚଲାବୁଲା କରିବାକୁ ଦେବନାହିଁ । ଧୀରସ୍ଥିର ଭାବରେ ବିଛଣାରେ ପଡ଼ିରହିଲେ ରୋଗୀପାଇଁ ମଙ୍ଗଳ । ରୋଗୀ ଅତି ଛାନିଆ ହୋଇପଡ଼ିଲେ ତାକୁ ଡିଷ୍ଟିଲ୍ଡ୍ ୱାଟର୍ (ଇଂଜେକ୍ସନ୍ ଦେବାପାଇଁ ଯେଉଁ ପାଣି ଆମ୍ପୁଲରେ ମିଳେ) ଇଂଜେକ୍ସନ୍ ଦେବାର ବ୍ୟବସ୍ଥା କରିବ । ବିଷ ଉପରେ ଏହାର କୌଣସି ପ୍ରଭାବ ନ ଥିଲେ ମଧ୍ୟ ରୋଗୀର ମନ ଉପରେ ଏହା ଅନୁକୂଳ ପ୍ରଭାବ ପକାଇଥାଏ ।

ଘ)	ଗୋଡ଼କୁ ସାପ କାମୁଡ଼ିଥିଲେ ଜଙ୍ଘରେ ଓ ହାତକୁ କାମୁଡ଼ିଥିଲେ ବାହୁରେ ଦୁଇରୁ ଚାରି ସେଣ୍ଟିମିଟର (ଇଞ୍ଚେରୁ ଦେଢ଼ଇଞ୍ଚ) ଓସାରର ଏକ ପଟି ବାନ୍ଧିଦେବ । କାମୁଡ଼ା ଜାଗାର ଠିକ୍ ଉପରକୁ କରି ପଟି ବାନ୍ଧିବ ନାହିଁ । ପଟିଟିକୁ ଭିଡ଼ିକରି ବି ବାନ୍ଧିବ ନାହିଁ । ପଟିଟିକୁ ଏଭଳି ଭାବରେ ବାନ୍ଧିବ ଯେପରିକି ପଟିତଳେ ନିଜ ଦୁଇଟି ଆଙ୍ଗୁଳିକୁ ମଧ୍ୟ ଗଳେଇ ଦେଇହେବ । ପଟି ବାନ୍ଧିବା ପାଇଁ ରବର, ମୋଟା ଲୁଗାଧଡ଼ି କିମ୍ବା ରୁମାଲ ଭଲ । କତା, ଝୋଟ କିମ୍ବା ପ୍ଲାଷ୍ଟିକ୍‌ର ସରୁ ଦଉଡ଼ି କିମ୍ବା ଇଲେକ୍ଟ୍ରିକ୍ ତାର ଇତ୍ୟାଦି ପଟି ବାନ୍ଧିବା ନିମନ୍ତେ ବ୍ୟବହାର କରିବ ନାହିଁ । ପ୍ରତି କୋଡ଼ିଏ ମିନିଟରେ ଏକ ମିନିଟ୍ ପାଇଁ ପଟିଟିକୁ ହୁଗୁଳା କରି ଦେଉଥିବ ଓ ପୁଣି ଭିଡ଼ି ଦେଉଥିବ । ଅଧଘଣ୍ଟାକରୁ କମ୍ ସମୟ ଭିତରେ ଡାକ୍ତରଖାନାରେ ପହଞ୍ଚି ହେଉଥିଲେ ମଝିରେ ପଟି ଖୋଲିବାର ଆବଶ୍ୟକତା ନାହିଁ ।

(ଙ)	ଆଗେ ଛୁରୀକୁ ନିଆଁରେ ତତେଇ ଛୁରୀଦ୍ୱାରା ସାପ କାମୁଡ଼ା ଜାଗାକୁ କାଟି ଚିରି ଦିଆହେଉଥିଲା । କିନ୍ତୁ ଏଥିରେ ଲାଭ ଅପେକ୍ଷା କ୍ଷତି ବେଶି । କାରଣ ନିଜେ ଜାଣି ନଥିବାରୁ ସାପ କାମୁଡ଼ା ଜାଗାର ସ୍ନାୟୁ ଓ ବଡ଼ ରକ୍ତନଳୀ କଟିଯିବାର ସମ୍ଭାବନା ଅଧିକ । ତାହାଛଡ଼ା ଛୁରୀରେ କାଟି ଚିରିଦେଲେ କଟା ଜାଗାରୁ ବେଶୀ

ରକ୍ତବୋହି ରୋଗୀର ଅବସ୍ଥା ସାଙ୍ଘାତିକ କରିଦେଇ ପାରେ । ପରେ ଏହା ପୂଯେଇ ବିସର୍ପି ଯାଇପାରେ ।

(ଚ) କାମୁଡ଼ା ଜାଗାରୁ ବ୍ରେଷ୍ଟପମ୍ପ ସାହାଯ୍ୟରେ ବିଷ ଟାଣିବା ପାଇଁ ଚେଷ୍ଟା କରିବାରେ କ୍ଷତିନାହିଁ ।

(ଛ) ସାପ କାମୁଡ଼ିଥିବା ସ୍ଥାନରେ ବରଫ ଲଦିବ ନାହିଁ ।

(ଜ) କ୍ଷତସ୍ଥାନକୁ ପୋଟାସ ପାଣିରେ ଧୋଇଦେଇ ତା' ଉପରେ ସଫା ରୁମାଲ କି ସଫାକନାର ପଟିଟିଏ ବାନ୍ଧିଦେବ । ସେଠାରେ ପୋଟାସ୍ ଗୁଣ୍ଡ ଘଷିବ ନାହିଁ । ପୋଟାସ ଗୁଣ୍ଡ ଘଷିଲେ କ୍ଷତସ୍ଥାନ ସଂକ୍ରମିତ ହୋଇଯିବାର ସମ୍ଭାବନା ଅଛି ।

(ଝ) ରୋଗୀକୁ ଚା', କଫି କିମ୍ୱା କ୍ଷୀର ପିଇବାକୁ ଦେବ । କିନ୍ତୁ ମଦ ପିଇବାକୁ ଦେବନାହିଁ ।

(ଞ) ରୋଗୀର ବାନ୍ତି ହେଉଥିଲେ କିମ୍ୱା ତାକୁ ବାନ୍ତି ମାଡୁଥିଲେ ତା'ର ମୁହଁକୁ କଡ଼ ପଟିଆ କରି ଶୁଆଇ ରଖିବ ।

(ଟ) ରୋଗୀର ନିଃଶ୍ୱାସ ବନ୍ଦ ହୋଇଗଲେ ସାଙ୍ଗେ ସାଙ୍ଗେ କୃତ୍ରିମ ଶ୍ୱାସକ୍ରିୟା କରାଇବ । ରୋଗୀର ମୁହଁକୁ କଡ଼ପଡ଼ିଆ ରଖି ପେଟମାଡ଼ି ଶୁଆଇଦେବ । ତା' ପାଖରେ ଆଣ୍ଠେଇ ପଡ଼ି ନିଜର ହାତ ଦୁଇଟିକୁ ତା' ଛାତି ପଞ୍ଜରାତଳକୁ ରଖିବ ଓ ନିଜ ଶରୀରର ଓଜନ ପଡ଼ିଲାଭଳି ଚାପ ପ୍ରୟୋଗ କରିବ । ମିନିଟକୁ ୧୨ରୁ ୧୫ ଥର ଏହିଭଳି କୃତ୍ରିମ ଶ୍ୱାସକ୍ରିୟା କରୁଥିବ । ରୋଗୀର ପାଟି ଉପରେ ପତଳା କନାଟିଏ ପକେଇ ତା'ର ପାଟିରେ ନିଜର ପାଟି ଲଗେଇ ଫୁଙ୍କିଲେ ମଧ୍ୟ କୃତ୍ରିମ ଶ୍ୱାସକ୍ରିୟା ହୋଇପାରେ ।

(ଠ) ଯେତେ ଚଞ୍ଚଳ ପାରିବ, ରୋଗୀକୁ ଡାକ୍ତରଖାନା ପଠାଇବାର ବ୍ୟବସ୍ଥା କରିବ । ତାକୁ ଖଟିଆରେ ଶୁଆଇ କିମ୍ୱା ଶଗଡ଼ ବା ମଟର ଗାଡ଼ିରେ ଡାକ୍ତରଖାନା ନେଇଯିବ । ରୋଗୀକୁ ଚଲେଇ ଚଲେଇ ଡାକ୍ତରଖାନା ନେବ ନାହିଁ ।

## ୨ । ଆଣ୍ଟିଭେନମ୍ ଦ୍ୱାରା ଚିକିତ୍ସା :

ସାପକାମୁଡ଼ା ରୋଗୀକୁ ଆଣ୍ଟିଭେନମ୍ ଇଂଜେକ୍ସନ୍ ଦେଇ ଚିକିତ୍ସା କରିବା ହିଁ ପ୍ରକୃଷ୍ଟ ପନ୍ଥା । ଆମ ଦେଶର କଶୌଲିସ୍ଥିତ କେନ୍ଦ୍ରୀୟ ଗବେଷଣା ପ୍ରତିଷ୍ଠାନ ଏବଂ ବମ୍ବେସ୍ଥିତ ହାପ୍‌କିନ୍ ଇନ୍‌ଷ୍ଟିଚ୍ୟୁଟ୍ ଠାରେ ଏଭଳି ଇଂଜେକ୍ସନ୍ ତିଆରି ହୋଇ ଦେଶର ସବୁଆଡ଼କୁ ଯୋଗାଇ ଦିଆଯାଏ । ନାଗ, ଡମ୍ପ, ବୋଡ଼ା ଓ ଚିତି ସାପଠାରୁ ବିଷ ସଂଗ୍ରହ କରି ଉକ୍ତ

ବିଷକୁ ଘୋଡ଼ାମାନଙ୍କୁ ଇଂଜେକ୍‌ସନ୍ ଦିଆଯାଏ । ପରେ ଘୋଡ଼ାଠାରୁ ରକ୍ତଟାଣି ଆଣ୍ଟିଭେନମ୍ ପ୍ରସ୍ତୁତ ହୁଏ । ବିଷକୁ ଇଂରାଜୀରେ 'ଭେନମ୍' ବୋଲି କୁହାଯାଏ । 'ଆଣ୍ଟି' ଅର୍ଥ ବିରୋଧୀ । ତେଣୁ ଆଣ୍ଟି ଭେନମ୍ ହେଉଛି ବିଷ ବିରୋଧୀ ଔଷଧ । ଆଣ୍ଟିଭେନମ୍ ଇଂଜେକ୍‌ସନ୍ ନେଇଗଲେ ଏହା ଦେହ ଭିତରେ ସାପବିଷ ସାଙ୍ଗରେ ଲାଗିଯାଇ ତାକୁ ଅକାମୀ କରିଦିଏ । ଆମ ଦେଶରେ ଯେଉଁ ପ୍ରକାର ଆଣ୍ଟିଭେନମ୍ ମିଳେ ତାହା ନାଗ, ତମ୍ପ, ବୋଡ଼ା ଓ ଚିତି ସାପର ବିଷ ବିରୋଧରେ କାମ କରିଥାଏ ।

ଆଣ୍ଟିଭେନମ୍ ପାଉଡ଼ର ଆକାରରେ ଇଂଜେକ୍‌ସନ୍ ଶିଶି ଭିତରେ ରଖାଯାଏ । ଇଂଜେକ୍‌ସନ୍ ଦେବା ପୂର୍ବରୁ ସେଥିରେ ଡିଷ୍ଟିଲଡ଼୍ ୱାଟର (ପାତିତ ଜଳ) ମିଶାଇ ହଲେଇଦେଲେ ପାଉଡ଼ର ପାଣିରେ ମିଳେଇ ଯାଏ । ତା'ପରେ ଏହାକୁ ରୋଗୀର ପିଚାରେ କିମ୍ବା ଶିରାବାଟେ ଦିଆଯାଇଥାଏ । କେହି କେହି ଏହି ଇଂଜେକ୍‌ସନ୍‌କୁ ସାପକାମୁଡ଼ା ଜାଗାର ଚାରିପଟେ ମଧ ଦେଇଥାନ୍ତି । ଦରକାର ପଡ଼ିଲେ ଏକାଧିକବାର ଏହି ଇଂଜେକ୍‌ସନ୍ ଦିଆଯାଇଥାଏ । ଏପରିକି ଗ୍ଲୁକୋଜ୍ ସାଲାଇନ୍‌ରେ ମିଶାଇ ମଧ ଏହାକୁ ଶିରାବାଟେ ଠୋପାଠୋପା କରି ଦିଆଯାଇପାରେ ।

ଆଣ୍ଟିଭେନମ୍ ସାପକାମୁଡ଼ା ରୋଗୀ ପାଇଁ 'ମହୌଷଧି' ବୋଲି କହିଲେ କିଛି ଭୁଲ୍ ହେବନାହିଁ । ଇଂଜେକ୍‌ସନ୍ ଦେବାର ମାତ୍ର କେଇ ମିନିଟ୍ ଭିତରେ ମଧ ଏହା ରୋଗୀକୁ ଆରୋଗ୍ୟ କରି ଦେଇପାରେ । ଏହି ଆଣ୍ଟିଭେନମ୍ ସମୁଦ୍ର ସାପର ବିଷ ବିରୋଧରେ କିଛି କାମ ଦିଏନାହିଁ ।

ଆଣ୍ଟିଭେନମ୍‌କୁ ପ୍ରତ୍ୟେକଙ୍କ ଘରେ ରଖିହେବ । ଏହାକୁ ସାଇତିବା ପାଇଁ ରେଫ୍ରିଜିରେଟର ନ ହେଲେ ବି ଚଳିବ । ଅନ୍ତତଃ ପାଞ୍ଚବର୍ଷ ପର୍ଯ୍ୟନ୍ତ ଏହାର ଗୁଣ ନଷ୍ଟ ନ ହୋଇ ଏହା ଘରେ ରହିପାରେ । ତେବେ ଅଧିକ ଗରମ ପଡ଼ିଲେ କି ଖରା ବାଜିଲେ ଏହା ନଷ୍ଟ ହୋଇଯାଏ । ଆଣ୍ଟିଭେନମ୍‌ର ଦାମ୍ କିଛି ବେଶି ନୁହେଁ । ସାପ କାମୁଡ଼ା ରୋଗୀକୁ ଡାକ୍ତରଖାନାକୁ ନେବାରେ ବିଳମ୍ବ ହେଲେ ମଧ ଆଣ୍ଟିଭେନମ୍ ଇଂଜେକ୍‌ସନ୍ ଦେଇଦେଲେ ଉପଶମ ମିଳେ ।

ତେବେ ଆଣ୍ଟିଭେନମ ସମସ୍ତଙ୍କ ଦେହରେ ଯାଏନି । ଜଣ ଜଣଙ୍କଠାରେ ଆଣ୍ଟିଭେନମ୍ ଇଂଜେକ୍‌ସନ ପ୍ରତିକ୍ରିୟା ସୃଷ୍ଟିକରି ପାରେ । ଦେହହାତରେ ଅଗିଆ ବାତ ଫଳିଯିବା, ନିଶ୍ୱାସ ପ୍ରଶ୍ୱାସ ନେବାରେ କଷ୍ଟହେବା, ତଣ୍ଟି ଓ ବେକମୂଳ ଫୁଲିଯିବା, ଇତ୍ୟାଦି ଲକ୍ଷଣ ପ୍ରକାଶ ପାଇପାରେ । ଏଭଳି ପ୍ରତିକ୍ରିୟାର ମୁକାବିଲା କରିବା ପାଇଁ ଆଡ୍ରେନାଲିନ କିମ୍ବା ଡେକାଡ୍ରନ ଇଂଜେକ୍‌ସନ ଦେବାକୁ ପଡ଼େ ।

ଆଣ୍ଟିଭେନମ୍ ଇଂଜେକ୍‌ସନ ଦେବା ପୂର୍ବରୁ ଏହା ପ୍ରତିକ୍ରିୟା କରିବ କି ନା ଜାଣିନେବା ଦରକାର । ଏହାକୁ ପରୀକ୍ଷା କରିବା ପାଇଁ ଚର୍ମ ତଳେ ଅଳ୍ପ ପରିମାଣର ଆଣ୍ଟିଭେନମ୍ ଇଞ୍ଜେକ୍‌ସନ ଦେଇ ଦିଆଯାଏ । ପାଞ୍ଚରୁ କୋଡ଼ିଏ ମିନିଟ୍ ଭିତରେ ଇଞ୍ଜେକ୍‌ସନ ଜାଗା ନାଲିପଡ଼ି ଫୁଲିଗଲେ ଏହା ପ୍ରତିକ୍ରିୟା କରିବ ବୋଲି ଜଣାପଡ଼ିଥାଏ । ପ୍ରତିକ୍ରିୟା କରିବ ବୋଲି ଜଣା ପଡ଼ିଲେ ପ୍ରତି ଅଧଘଣ୍ଟାରେ ଅଳ୍ପଅଳ୍ପ ପରିମାଣରେ ଆଣ୍ଟିଭେନମ୍ ଚର୍ମତଳେ ଦିଆଯାଇ ପୂରାମାତ୍ରାର ଆଣ୍ଟିଭେନମ୍ ଦେହ ଭିତରକୁ ପ୍ରବେଶ କରାଇବା ନିମନ୍ତେ ପଦକ୍ଷେପ ନିଆଯାଏ ।

ତେବେ ଆଣ୍ଟିଭେନମ୍ ଇଂଜେକ୍‌ସନ୍ ଦେଲାବେଳେ ଖୁବ୍ ଧୀରେ ଧୀରେ ଦିଆଯିବା ହିଁ ନିୟମ ।

### ୩। ଆନୁଷଙ୍ଗିକ ଚିକିତ୍ସା :

ବିଷାକ୍ତ ସାପ କାମୁଡ଼ିଥାଉ କି ବିଷାକ୍ତ ହୋଇ ନଥିବା ସାପ କାମୁଡ଼ିଥାଉ, ରୋଗୀକୁ ଡାକ୍ତରଙ୍କ ତତ୍ତ୍ୱାବଧାନରେ ଚିକିତ୍ସା କରବା ହିଁ ଉଚିତ । ସାପକାମୁଡ଼ା ଯୋଗୁଁ କ୍ଷତ ହୋଇଥିବାରୁ ରୋଗୀକୁ ଧନୁଷ୍ଟଙ୍କାର ନ ହେବା ପାଇଁ ଟିଟାନସ୍ ପ୍ରତିଷେଧକ ଇଂଜେକ୍‌ସନ ଦିଆଯାଏ । ବିନ୍ଧାଛିଟିକା କରୁଥିଲେ ଯନ୍ତ୍ରଣା ନିବାରକ ଔଷଧ ଦେବାକୁ ପଡ଼ିପାରେ ଏବଂ ଆଣ୍ଟିବାୟୋଟିକ୍ ଇଂଜେକ୍‌ସନ୍ ଦେବାକୁ ପଡ଼େ । ନୋହିଲେ କ୍ଷତସ୍ଥାନ ପଚି ଯିବାର ସମ୍ଭାବନା ଥାଏ । ପ୍ରତି ଘଣ୍ଟାରେ ରୋଗୀର ନାଡ଼ିର ଗତି, ରକ୍ତଚାପ ଓ ଶ୍ୱାସକ୍ରିୟାର ହାର ଲିପିବଦ୍ଧ କରାଯାଏ । କେତେକ କ୍ଷେତ୍ରରେ ରକ୍ତ ଓ ମୂତ୍ର ପରୀକ୍ଷାର ଆବଶ୍ୟକତା ପଡ଼େ । ବିଶେଷକରି ପରିସ୍ରାରେ ରକ୍ତ ଯାଉଛି କି ନା ତାହା ଦେଖିବାରେ ଗୁରୁତ୍ୱ ଦେବା ଓ କାହା କାହା କ୍ଷେତ୍ରରେ ହୃତ୍‌ପିଣ୍ଡର କାର୍ଯ୍ୟକାରୀ କ୍ଷମତା ଜାଣିବା ପାଇଁ ଇ.ସି.ଜି. ପରୀକ୍ଷା କରିବା ବା ଦରକାରପଡ଼େ । ତାହାଛଡ଼ା କ୍ଷତ ସ୍ଥାନକୁ ଧୋଇ ସେଠାରେ ପଟି ବାନ୍ଧି ଦିଆଯାଏ ।

ଜଣ ଜଣଙ୍କ ଠାରେ ସାପ ବିଷର ପ୍ରଭାବରେ ବୃକ୍କ ସୁଚାରୁ ରୂପେ କାମ କରିପାରେ ନାହିଁ । ଫଳରେ ପରିସ୍ରା ବନ୍ଦ ହୋଇଯାଏ । ପରିସ୍ରା ବନ୍ଦ ହୋଇଯିବାରୁ ଶରୀରର ବହୁ ଅଦରକାରୀ ଉପାଦାନ ରକ୍ତରେ ଜମିଯାଏ । ରକ୍ତକୁ ସଫା କରିବା ନିମନ୍ତେ ଡାୟାଲିସିସ୍ ନାମକ ପ୍ରଣାଳୀର ସାହାଯ୍ୟ ନେବାକୁ ପଡ଼େ । କିନ୍ତୁ ଏଥିରେ ଖର୍ଚ୍ଚ ବେଶୀ ।

ବୋଡ଼ାସାପ କାମୁଡ଼ି ଦେହରୁ ଅଧିକ ରକ୍ତସ୍ରାବ ହୋଇଥିଲେ ରୋଗୀକୁ ରକ୍ତ ଦେବାକୁ ପଡ଼ିଥାଏ । ଛାତିର ମାଂସପେଶୀ କାମ କରିବାକୁ ଅକ୍ଷମ ହୋଇ ରୋଗୀ

ନିଃଶ୍ୱାସପ୍ରଶ୍ୱାସ ନେଇ ନ ପାରିଲେ କୃତ୍ରିମ ଶ୍ୱାସକ୍ରିୟା କରିବା ନିମନ୍ତେ ଯନ୍ତ୍ରର ସାହାଯ୍ୟ ନେବାକୁ ପଡ଼େ । ଯେଉଁ ରୋଗୀ ପାଟିବାଟେ ଖାଇପାରେ ନାହିଁ, ତାକୁ ନଳୀବାଟେ କ୍ଷୀର, ବାର୍ଲି ଆଦି ତରଳ ଖାଦ୍ୟ ଖାଇବାକୁ ଦିଆଯାଏ । ଶିରାବାଟେ ମଧ୍ୟ ଗ୍ଲୁକୋଜ କିମ୍ବା ଗ୍ଲୁକୋଜ୍ ସାଲାଇନ୍ ଦେବାକୁ ହୋଇଥାଏ ।

ସୁଶ୍ରୁତ ସଂହିତାରେ ସାପ କାମୁଡ଼ାର ଚିକିତ୍ସା ସମ୍ବନ୍ଧରେ ଉଲ୍ଲେଖ ଅଛି । ସାପକାମୁଡ଼ା ଜାଗାର ଉପରକୁ ପଟି ବାନ୍ଧିବା, ଲୁହାଛଡ଼କୁ ନିଆଁରେ ପଜେଇ କାମୁଡ଼ା ଜାଗାରେ ମାଡ଼ିଦେବା ତଥା ବିଭିନ୍ନ ପ୍ରକାର ଗଦରୁ ପ୍ରସ୍ତୁତ ଔଷଧ ବ୍ୟବହାର କରିବା ବିଷୟ ସୁଶ୍ରୁତ ସୂଚନା ଦେଇଛନ୍ତି ।

ସାପକାମୁଡ଼ା ଜାଗାରେ କୁକୁଡ଼ାକୁ ଧରି ତା' ମଳଦ୍ୱାରକୁ ଲଗାଇଦେଲେ ମଳଦ୍ୱାର ବିଷ ଟାଣି ନେଇଥାଏ ବୋଲି କେହି କେହି ବିଶ୍ୱାସ କରିଥାନ୍ତି । ଆମ ଦେଶର ପ୍ରାୟ ସବୁ ସ୍ଥାନରେ ସାପ ବିଷହରଣ କରିବା ପାଇଁ ଚେଷ୍ଟା କରାଯାଇଥାଏ ଓ ତାହା ଉପରେ ଲୋକଙ୍କର ଅଗାଧ ଆସ୍ଥା ରହିଛି । କିନ୍ତୁ ଏହାର କାର୍ଯ୍ୟକାରିତାକୁ ଗବେଷଣାଗାରରେ ପ୍ରମାଣ କରାଯାଇ ପାରୁନାହିଁ । କେହି କେହି ମତ ଦିଅନ୍ତି ଯେ ମନ୍ତ୍ରରେ ଉଚ୍ଚାରିତ ଶବ୍ଦଗୁଡ଼ିକର ଏକ ମନସ୍ତାତ୍ତ୍ୱିକ ପ୍ରଭାବ ରହିଛି । ଏହା ଏକ ଧରଣର ମାନସିକ ଚିକିତ୍ସା । ମନ୍ତ୍ର ପ୍ରଭାବରେ ନିଜେ ଭଲ ହୋଇଯିବ ବୋଲି ରୋଗୀର ବିଶ୍ୱାସ ଆସିଯାଏ । ତେଣୁ ସେ ଅଯଥା ଆତଙ୍କିତ ହୋଇପଡ଼େ ନାହିଁ । କିନ୍ତୁ ବିଷଧର ସାପ କାମୁଡ଼ିଥିଲେ ଓ ବେଶୀ ପରିମାଣରେ ବିଷ ରୋଗୀର ଦେହ ଭିତରକୁ ପ୍ରବେଶ କରିଥିଲେ ମନ୍ତ୍ର ଓ ଝଡ଼ାଫୁଙ୍କା ଆଦୌ କାମ ଦେବନାହିଁ । ଆଣ୍ଟିଭେନମ୍‌ର ବିକଳ୍ପ ନାହିଁ । ସାପକାମୁଡ଼ାର ଚିକିତ୍ସା ପାଇଁ ଆଣ୍ଟିଭେନମ୍ ଉପରେ ଆସ୍ଥା ସ୍ଥାପନ କରିବା ହିଁ ଯୁକ୍ତିଯୁକ୍ତ ।



# ସାପମାଂସର ଆଦର

ବୋଆ କନଷ୍ଟ୍ରିକ୍ଟର ଅଜଗର ଭଳି ଏକ ଜାତିର ସାପ । ଏହି ସାପର ବିଷ ନାହିଁ । ତଥାପି ବୋଆ କନ୍‌ଷ୍ଟ୍ରିକ୍ଟର ବିଷୟରେ ସତମିଛ ବହୁ ରୋମାଞ୍ଚକର କାହାଣୀ ଶୁଣିବାକୁ ମିଳେ । ତେଣୁ ସାଧାରଣ ଭାବରେ ଦେଖିବାକୁ ଗଲେ ବୋଆ କନ୍‌ଷ୍ଟ୍ରିକ୍ଟର୍‌ର ନାଁ ଶୁଣିଲେ ଲୋକେ ଭୟରେ ଥରିଉଠନ୍ତି ।

କିନ୍ତୁ ବୋଆ ସାପକଥା ପଡ଼ିଲେ ଆଫ୍ରିକାର ଲୋକଙ୍କ ପାଟିରୁ ଲାଳ ଗଳିପଡ଼େ । ଯେତେ ଦାମ୍ ଦେବାକୁ ପଡୁ ପଛେ, ବୋଆ କିଣିବାକୁ ସେମାନେ ପଛାନ୍ତି ନାହିଁ । ସେମାନଙ୍କ ମତରେ ବୋଆ ମାଂସଠାରୁ ଆଉ ସୁଆଦିଆ କିଛି ନାହିଁ । ସେଠାକାର ବଜାରରେ ବୋଆ ମାଂସ ବିକ୍ରୀ ହୋଇଥାଏ । ତେବେ ଏହା କିଲୋ ହିସାବରେ ବିକ୍ରି ନ ହୋଇ ବିକ୍ରି ହୁଏ ମିଟର ହିସାବରେ । ବୋଆର ମୋଟେଇକୁ ଚାହିଁ ପ୍ରତି ମିଟର ବୋଆ ମାଂସର ଦର ଠିକ୍ କରାଯାଇଥାଏ । କେତେକ ଜାଗାରେ ବୋଆ ମାଂସ ବିକ୍ରି କରାଯିବା ପାଇଁ ସରକାରୀ ଦୋକାନ ଖୋଲିଛି । ସରକାରୀ ଏଜେଣ୍ଟଙ୍କ ଛଡ଼ା ଅନ୍ୟ କେହି ବୋଆ ମାଂସ ବିକି ପାରିବେ ନାହିଁ ବୋଲି ନିୟମ ଜାରି କରାଯାଇଛି । କିନ୍ତୁ ସରକାରୀ ଦୋକାନରୁ ବୋଆ ମାଂସ ପାଇବାରେ ଖାଉଟିମାନଙ୍କୁ ସାଧାରଣତଃ ଅସୁବିଧା ହୋଇଥାଏ । ତେଣୁ କଳାବଜାରୀମାନେ ଏହାର ସୁଯୋଗ ନିଅନ୍ତି । ଚୋରାରେ ବୋଆ ମାଂସ ବିକି ସେମାନେ ପ୍ରଚୁର ଲାଭ ମାରିନିଅନ୍ତି । କାରଣ ଚୋରାରେ ବୋଆ ମାଂସ କିଣିବା ନିମନ୍ତେ ବୋଆ ମିଟର ପିଛା ବେଶ୍ ଅଧିକ ଦାମ୍ ଦେବାକୁ ପଡ଼ିଥାଏ ।

କେବଳ ଆଫ୍ରିକା କାହିଁକି, ପୃଥିବୀରେ ଅନ୍ୟାନ୍ୟ ବହୁ ଦେଶର ଲୋକେ ସାପ ମାଂସ ଖାଇବାକୁ ଭଲ ପାଆନ୍ତି । ଆମଦେଶର କେତେକ ସମ୍ପ୍ରଦାୟଙ୍କ ପାଇଁ ସାପ ମାଂସ ଏକ ସୁସ୍ୱାଦୁ ଖାଦ୍ୟ । ଇଣ୍ଡୋନେସିଆରେ ଅଜଗର ସାପକୁ କାଟି ତା'ର କଣ୍ଟା ବାହାର କରି କଟ୍‌ଲେଟ୍ ତିଆରି କରାଯାଏ । ଏହି କଟ୍‌ଲେଟ୍‌ର ଖୁବ୍ ଆଦର । ଆମେରିକାର ଫ୍ଲୋରିଡ଼ାରେ ରାଟଲ୍-ସ୍ନେକ୍ ନାମକ ଏକ ପ୍ରକାର ବିଷାକ୍ତ ସାପକୁ ରାନ୍ଧି ଟିଣରେ ବନ୍ଦ କରି ବିକ୍ରି କରାଯାଇଥାଏ । ଏହାକୁ କିଣିବା ପାଇଁ ଗ୍ରାହକମାନଙ୍କ ମଧ୍ୟରେ ପ୍ରବଳ ପ୍ରତିଯୋଗିତା ।

ଚୀନ୍‌ର ବଜାର ମାନଙ୍କରେ ସ୍ୱତନ୍ତ୍ର ଧରଣର ସାପ ବିକ୍ରି ଦୋକାନମାନ ଦେଖିବାକୁ ମିଳେ । ସେହି ଦୋକାନମାନଙ୍କରେ ଜିଅନ୍ତା ସାପ ସବୁକୁ ଭଲ ଖାଇବା ପିଇବାକୁ ଦେଇ ବଡ଼ ହେପାଜତରେ ରଖାଯାଇଥାଏ । କେଉଁ ସାପମାଂସକୁ ଜେଲି ଦେଇ ରାନ୍ଧିଲେ

ତାହା ଅଧିକ ସୁଆଦିଆ ଲାଗେ ତ ଆଉ କେଉଁ ସାପ ମାଂସରେ ଭଲ ରୋଷ୍ଟ ରନ୍ଧାଯାଇପାରେ । ଖାଉଟିମାନେ ନିଜ ନିଜର ପସନ୍ଦ ଅନୁସାରେ ସାପ ଦୋକାନରୁ ଜିଅନ୍ତା ସାପକୁ କିଣିନେଇ ସୁସ୍ୱାଦୁ ବ୍ୟଞ୍ଜନ ତିଆରି କରିଥାନ୍ତି ।

ଭିଏତ୍‌ନାମରେ ବୋଆ ମାଂସର ଆଦର ବେଶୀ । ସେଠାକାର ଜାତୀୟ ଭୋଜି ଉତ୍ସବରେ ସାଧାରଣତଃ ସାପମାଂସ ପରଷା ଯାଇଥାଏ । ବୋଆର ଚପ୍ ସେଠାରେ ଖୁବ୍ ଲୋକପ୍ରିୟ । ବିଭିନ୍ନ ତିନିଜାତିର ସାପକୁନେଇ ରନ୍ଧାଯାଇଥିବା ଝୋଳ ଖାଇବାକୁ ସେଠାରେ ପ୍ରାୟ ସମସ୍ତେ ଭଲ ପାଇଥାନ୍ତି । ଏଭଳି ଝୋଳର ନାଁ ହେଉଛି ''ତିନି ସାପଙ୍କ ସଭା ।''

ଜାପାନରେ ରହିଛି କେତେକ ସ୍ୱତନ୍ତ୍ର ଧରଣର ହୋଟେଲ । ସେହି ହୋଟେଲମାନଙ୍କରେ କେବଳ ସାପମାଂସରୁ ପ୍ରସ୍ତୁତ ହେଉଥିବା ଭଜା, ତରକାରି, କଟ୍‌ଲେଟ୍, ଚପ୍ ଇତ୍ୟାଦି ଭଳିକି ଭଳି ରନ୍ଧାଖାଦ୍ୟ ଯୋଗାଇ ଦିଆଯାଏ । ସେଠାରେ ''ମାମୁସି'' ନାମକ ସାପମଦ ମଧ ପିଇବାକୁ ମିଳିଥାଏ । ସାପର ବିଷ ମିଶାଯାଇ ତିଆରି ହୁଏ ''ମାମୁସି''। ତେବେ ମାମୁସିର ସ୍ୱାଦ ଓ ପ୍ରଭାବ କେବଳ ସେହି ମଦ ପିଇବା ଲୋକଙ୍କୁ ହିଁ ଜଣା ।

ସାପମାଂସ ପରିବେଷିତ ହେଉଥିବା ସେଭଳି କେତେକ ହୋଟେଲମାନଙ୍କ ପାଇଁ ଆଉ ଏକ ସୁବିଧା ରହିଥାଏ । ହୋଟେଲର ମାଲିକ ମଧ ହୋଟେଲ୍‌ରେ ବିଭିନ୍ନ ଜାତିର ଜିଅନ୍ତା ସାପମାନ ପୋଷିଥାନ୍ତି । ସେହି ସାପକୁ ଏକ ବାଡ଼ି ସାହାଯ୍ୟରେ ନେଇ ଗ୍ରାହକମାନଙ୍କ ପାଖରେ ପ୍ରଦର୍ଶନ କରାଯାଏ । ଗ୍ରାହକ ନିଜର ରୁଚି ଅନୁସାରେ ସାପ ନିର୍ବାଚିତ କଲାପରେ ସେହି ସାପକୁ ଗ୍ରାହକର ବରାଦ ମୁତାବକ ରନ୍ଧାଯାଇ ପରିବେଷଣ କରାଯାଇଥାଏ ।

କେବଳ ଯେ ଏସିଆ ଆଉ ଆଫ୍ରିକାର ଲୋକେ ସାପ ମାଂସକୁ ପସନ୍ଦ କରିଥାନ୍ତି ତାହା ନୁହେଁ । ବେଳଥିଲା, ଯେତେବେଳେ ଇଉରୋପର ଅଧିବାସୀମାନେ ମଧ ସାପମାଂସ ଖାଇବାରେ ଆପତ୍ତି କରୁ ନଥିଲେ । କୁହାଯାଏ ଯେ, ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀରେ ଇଉରୋପରେ ଯେଉଁ ଦୁର୍ଭିକ୍ଷ ପଡ଼ିଥିଲା, ସେତେବେଳେ ଏହି ସାପମାଂସ ଖାଇ ବହୁଲୋକଙ୍କର ଜୀବନ ରକ୍ଷା କରିବା ସମ୍ଭବ ହୋଇପାରିଥିଲା । କାରଣ ସେତେବେଳେ ଇଉରୋପର ଚାରିଆଡ଼େ ସାପମାନେ ହାଉଯାଉ ହେଉଥିଲେ ।ତେବେ ସାପ ମାଂସ ଅନ୍ୟ ମାଂସଭଳି ଏକ ପୁଷ୍ଟିସାର ଜାତୀୟ ଖାଦ୍ୟ ।



# ସାପ ସାଜିଲାଣି ଚାକର

ଆମ ଦେଶରେ ସାପୁଆ କେଳାମାନେ ସାପ ପୋଷିଥାନ୍ତି । ଅନ୍ୟମାନଙ୍କ ପାଖରେ ସାପକୁ ଦେଖେଇ ପଇସା ସଂଗ୍ରହ କରିଥାନ୍ତି । ହେଲେ କେତେକ ଲୋକ ସାପକୁ ପୋଷା ମନେଇ ବିଭିନ୍ନ ଘରକାମରେ ଲଗେଇବାର ଦୃଷ୍ଟାନ୍ତ ରହିଛି । ପ୍ରାଣୀତତ୍ତ୍ୱବିତ୍‌ମାନଙ୍କ ମତରେ ସାପର ମସ୍ତିଷ୍କ ଖୁବ୍ ଛୋଟ ହୋଇଥିବାରୁ ସେ ଜଟିଳ କଥା ସବୁ ଶିଖି ବରାଦ ଅନୁସାରେ କାମ କରିପାରିବ ନାହିଁ । ତଥାପି ଇଣ୍ଡୋନେସିଆର ଏକ ଦ୍ୱୀପରେ ଜଣେ ଲୋକ ବୋଆ ସାପଟିଏ ପୋଷିଥିଲେ । ସାପକୁ ଏପରି ତାଲିମ ଦେଇଥିଲେ ଯେ, ସାପ ତାଙ୍କ ବାଡ଼ିର ତାଳଗଛରେ ଚଢ଼ି ତାଳ ତୋଳିପାରୁଥିଲା । ଘରେ ମୂଷା ମାରିବାପାଇଁ ମଧ୍ୟ ଆଫ୍ରିକା ଓ ଦକ୍ଷିଣ ଆମେରିକାର କୃଷକମାନେ ବୋଆ ସାପ ପୋଷିଥାନ୍ତି । ବ୍ରାଜିଲ ଦେଶରେ ଏଭଳି ପୋଷା ସାପଙ୍କୁ ବଜାରରେ ବିକ୍ରି କରାଯାଇଥାଏ । ପୋଷା ସାପ ଘର ଓ ଅଗଣା ଚାରିଆଡ଼େ ବୁଲି ମୂଷାମାରି ଖାଇଥାଏ ଓ ମୂଷା ସଂଖ୍ୟା କମିଗଲେ ଦୂରରେ ଥିବା ବଣବୁଦା ସବୁ ଅଣ୍ଡାଳି ନିଜର ଖାଦ୍ୟ ସଂଗ୍ରହ କରେ । ଏପରିକି ଖାଦ୍ୟ ଅନୁସନ୍ଧାନରେ କିଛିଦିନ ପାଇଁ ନିଜର ମୁନିବ ଘରୁ ବାହାରିଯାଇ ପରେ ପୁଣି ମୁନିବ ଘରକୁ ଫେରିଆସେ । ଦେଖାଯାଇଥାଏ ଯେ, ଆଖ ପାଖରେ ବୋଆ କନ୍‌ଷ୍ଟ୍ରିକ୍‌ଟର ସାପ ଆତଯାତ ହେଉଥିଲେ ବୋଆର ଡରରେ ସେଠାରେ କୌଣସି ବିଷାକ୍ତ ସାପ ପଶିବାକୁ ସାହସ କରନ୍ତି ନାହିଁ । ତେଣୁ ବିଷାକ୍ତ ସାପ କବଳରୁ ରକ୍ଷା ପାଇବା ପାଇଁ ଲୋହିତ ଭାରତୀୟମାନେ ନିଜ ଘରେ ବୋଆ ସାପ ପୋଷୁଥିବାର ଦେଖାଯାଏ । ସେମାନଙ୍କ ଦେଖାଦେଖି ଆମେରିକାରେ ବସବାସ କରୁଥିବା କେତେକ ଇଉରୋପୀୟ ମଧ୍ୟ ସେମାନଙ୍କ ଘରେ ବୋଆସାପ ପୋଷିଥାନ୍ତି । ବ୍ରାଜିଲ ଦେଶର ଯେଉଁ ଅଞ୍ଚଳରେ ବିଷାକ୍ତ ସାପମାନେ ଅଧିକାଂଶ ସଂଖ୍ୟାରେ ଦେଖାଯାଇଥାନ୍ତି, ସେହି ଅଞ୍ଚଳର ଲୋକେ ଘରେ ଅନ୍ତତଃ ୪ ମିଟରରୁ ଅଧିକ ଲମ୍ବର ବୋଆ ସାପ ପୋଷିଥାନ୍ତି । ସେମାନଙ୍କ ଘରେ ବୋଆ ସାପ ଜଗୁଆଳିର କାମ କରେ । ଅତି ବିଶ୍ୱସ୍ତ ଭାବରେ ମୁନିବର ସ୍ୱାର୍ଥ ରକ୍ଷାକରେ । ଘରର ପିଲାମାନଙ୍କୁ ଅତି ନିଜର ବୋଲି ଭାବି ସେମାନଙ୍କୁ ହେପାଜତ କରେ । ପିଲାମାନେ ବାହାରକୁ ବୁଲି ବାହାରିଲେ ବୋଆ ସେମାନଙ୍କ ସାଙ୍ଗରେ ବାହାରି ତାଙ୍କ ଉପରେ ନିଘା ରଖିଥାଏ । ବୋଆ ସାଙ୍ଗରେ ଥିଲେ ବାପ ମା'ମାନେ ନିଶ୍ଚିନ୍ତ । କେବଳ ଯେ ବିଷାକ୍ତ ସାପମାନେ ବୋଆଠାରୁ ଦୂରରେ ରହନ୍ତି ତାହା ନୁହେଁ, ବୋଆ ଡରରେ ଅନ୍ୟ କୌଣସି ଜନ୍ତୁ ବି ପିଲାର କ୍ଷତି କରିବାକୁ ସାହସ କରନ୍ତି ନାହିଁ ।

କିନ୍ତୁ ବୋଆ ମଣିଷମାନଙ୍କ ସାଙ୍ଗରେ, ଏପରି ଘନିଷ୍ଠ ସମ୍ପର୍କ ସୃଷ୍ଟିକରେ କାହିଁକି ? ଏ ପ୍ରଶ୍ନର କୌଣସି ସନ୍ତୋଷଜନକ ଉତ୍ତର ମିଳିପାରୁ ନାହିଁ । ହୁଏତ ବୋଆର ମନସ୍ତତ୍ତ୍ୱ ବୋଆକୁ ହିଁ ଜଣା ।



# ସାପ ସାଜିଛି ଶତ୍ରୁ

ତା' ନାଁ ଗୁୟାମ ରେଲ୍ । ଗୁୟାମ୍ ରେଲ୍ ସିନା ଚଢ଼େଇ, ହେଲେ ସେ ଉଡ଼ିପାରେନି । ତା'ର ଘର ପ୍ରଶାନ୍ତସାଗର ଭିତରେ ଥିବା ଗୁୟାମ୍ ଦ୍ୱୀପରେ । କହିବାକୁ ଗଲେ ସେ ହେଉଛି ଗୁୟାମ ଦ୍ୱୀପର ମୂଳ ବାସିନ୍ଦା । ବେଶ୍ ଖୁସିବାସିରେ ଚଳି ଆସୁଥିଲା ସେ । ସେ କାହାରି କ୍ଷତି କରୁ ନଥିଲା କି ଅନ୍ୟ କୌଣସି ଜନ୍ତୁ ତା'ର କିଛି କ୍ଷତି କରୁ ନଥିଲେ । କିନ୍ତୁ ତା' ଉପରକୁ ଯେ ଦିନେ ବିପଦ ମାଡ଼ି ଆସିବ, ସେ କଥା ସେ ଅବା ଜାଣିଥାନ୍ତା କିପରି ?

ଅଘଟଣ ଘଟିଲା । କ୍ରମେ କ୍ରମେ ଗୁୟାମ୍ ଦ୍ୱୀପରେ ଆସି ପହଞ୍ଚିଗଲେ କୁକୁର, ବିଲେଇ ଏବଂ ବଡ଼ ବଡ଼ ମୂଷା । ଗୁୟାମ୍ ରେଲ୍ ସହଜେ ବଡ଼ ଭୟାଳୁ । ପୁଣି ଉଡ଼ି ନ ପାରିବା ବି ଦାଉ ସାଧିଲା । କୁକୁର, ବିଲେଇ ଆଦି ତା' ଉପରେ ଝାମ୍ପିପଡ଼ି ତାକୁ ମାରିଦେଲେ । ମହାଆନନ୍ଦରେ ଖାଇ ଚାଲିଲେ ତା'ର ମାଂସ ।

ବିଚରା କ'ଣ ଆଉ କରିବ ସେ । ତେଣୁ ଜୀବନ ବଞ୍ଚେଇବା ପାଇଁ ସେ ପଳେଇଲା ବଣକୁ । ବଣର ଗହଳିଆ ଗଛ ଆଉ ବୁଦା ଆଢୁଆଳରେ ନିଜକୁ ଲୁଚେଇ ରଖିଲା ସେ । ଯାହାହେଉ କୌଣସି ପ୍ରକାରେ ବଞ୍ଚିଗଲା ଗୁୟାମ୍ ରେଲ୍ ।

ଘନେଇ ଆସିଲା ଆହୁରି ଏକ ବିପଦ । ଲାଗିଗଲା ଦ୍ୱିତୀୟ ବିଶ୍ୱଯୁଦ୍ଧ । ଯୁଦ୍ଧ ପରେ ଗୁୟାମ୍ ଦ୍ୱୀପରେ ଆସି ପାଦ ଦେଲା ନୂଆ ଅତିଥି ଜଣେ । ସେ ହେଲା 'ବାଦାମୀ ବୃକ୍ଷବାସୀ ସାପ' ବା 'ବ୍ରାଉନ୍ ଟ୍ରି ସ୍ନେକ୍' ।

କିନ୍ତୁ ସେହି ସାପ ପୁଣି ଆସିଲା କୁଆଡୁ । ବୋଧହୁଏ ନିଉଗିନିର ପାପୁଆରୁ ଜାହାଜ ଭିତରେ ପଶିଯାଇ ସେହି ଜାହାଜ ଯୋଗେ ଆସି ଓହ୍ଲେଇ ପଡ଼ିଥିବ ଗୁୟାମ୍ ଦ୍ୱୀପରେ । ସେଠାରେ ପହଞ୍ଚି ନୂଆ ଜାଗାଟିକୁ ବେଶ୍ ଆଦରିନେଲା ସାପଟି । ନିଜର ବସା ବାନ୍ଧିଲା । ବଂଶ ବଢ଼େଇ ଚାଲିଲା । ହୁ ହୁ ହୋଇ ବଢ଼ି ଚାଲିଛି ସାପର ସଂଖ୍ୟା । ଏବେ ଛୋଟିଆ ଗୁୟାମ୍ ଦ୍ୱୀପରେ ବାଦାମୀ ବୃକ୍ଷବାସୀ ସାପଙ୍କର ସଂଖ୍ୟା ଦଶ ଲକ୍ଷରୁ ବେଶୀ ।

ସେହି ସାପ ପାଲଟିଗଲା ଗୁୟାମ୍ ରେଲ୍‌ର ପହିଲା ନମ୍ବର ଶତ୍ରୁ । ସାପ କାମୁଡ଼ାରେ ଦଳ ଦଳ ହୋଇ ମରିଚାଲିଲେ ଗୁୟାମ୍ ରେଲ । ଏପରି ଅବସ୍ଥା ଆସି ପହଞ୍ଚିଲା ଯେ ପାଖାପାଖି ଦଶବର୍ଷ ତଳେ ସେମାନଙ୍କ ସଂଖ୍ୟା ଯଥେଷ୍ଟ କମିଗଲା । ସେମାନଙ୍କ କୁଳ

ବୁଡ଼ିଯିବା ...ଲା । ଗୁୟାମ୍ ରେଲ୍ ଥିଲା ଗୁୟାମ୍ ଦ୍ୱୀପର ଆଦି ବାସିନ୍ଦା । କିନ୍ତୁ ସେ ପ୍ରାୟ ନିଶ୍ଚିହ୍ନ ହେବାକୁ ବ...

ଏହା କିନ୍ତୁ ଅନେକଙ୍କୁ ସହ୍ୟ ହେଲା ନାହିଁ । ...ହୁ ପ୍ରାଣୀ ବିଜ୍ଞାନୀ ଏବଂ ଗବେଷକ ଗୁୟାମ ରେଲ୍‌କୁ ବଞ୍ଚେଇବା ପାଇଁ ଉଦ୍ୟମ ଆରମ୍ଭ କରିଦେଲେ । ଯେଉଁ କେତୋଟି ପକ୍ଷୀ ବଞ୍ଚିରହିଥିଲେ ସେମାନେ ସେଗୁଡ଼ିକୁ ଧରି ନିଜେ ପାଳିବାକୁ ଲାଗିଲେ । କ୍ରମେ ସେମାନଙ୍କ ବଂଶ ବଢ଼ିଲା । ସଂଖ୍ୟା ବଢ଼ି ବଢ଼ି ୨୦୦ରୁ ବେଶୀ ହୋଇଗଲା ।

୧୯୯୫ ମସିହାରେ ଗବେଷକ ମାନେ ବାଛିଲେ ରୋଟା ନାମକ ଦ୍ୱୀପକୁ । ରୋଟା ଦ୍ୱୀପଟି ଗୁୟାମ୍ ଦ୍ୱୀପଠାରୁ ୫୦ କିଲୋମିଟର ଦୂରରେ ଅବସ୍ଥିତ । ଥରକୁ ୩୦ରୁ ୫୦ଟି ଲେଖାଏଁ ଗୁୟାମ୍ ରେଲ୍ ପକ୍ଷୀକୁ ନେଇ ଛାଡ଼ି ଦେଇ ଆସିଲେ ରୋଟା ଦ୍ୱୀପରେ । ଏହି ଦ୍ୱୀପରେ କୌଣସି ସାପ ନାହାନ୍ତି । ତେଣୁ ଗୁୟାମ୍ ରେଲ୍ ସେଠାରେ ବେଶ୍ ନିରାପଦରେ ନିଜର ବଂଶ ବଢ଼େଇ ପାରିବ ।

ତେବେ ରୋଟାରେ ସିନା ଏବେ ସାପ ନାହାଁନ୍ତି । କିନ୍ତୁ ଭବିଷ୍ୟତରେ ଯେ ସେଠାରେ ସାପଯାଇ ହାଜର ହେବନି, ସେକଥା କିଏ ଜାଣିଛି । ହେଲେ ରୋଟା ଦ୍ୱୀପର ଲୋକେ ଯଦି ଯତ୍ନ କରି ଦ୍ୱୀପଟିକୁ ସାପମୁକ୍ତ ରଖି ପାରନ୍ତି, ତେବେ ଗୁୟାମ୍ ରେଲ୍‌ର ନାଁ ସବୁଦିନ ପାଇଁ ଲୋପ ପାଇଯିବନି । ସେ ବଞ୍ଚିଯିବ । ଋଣୀ ରହିବ ରୋଟା ଦ୍ୱୀପର ବାସିନ୍ଦାମାନଙ୍କ ନିକଟରେ ।



# ଚିକିତ୍ସା ଶାସ୍ତ୍ରର ସଙ୍କେତରେ ସାପ

ଆପଣମାନେ କେହି କେହି ଚିକିତ୍ସା ବିଜ୍ଞାନର ପ୍ରତିନିଧିତ୍ୱ କରୁଥିବା ସଙ୍କେତର ଛବି ଦେଖିଥିବେ । ଏହି ସଂକେତରେ ରହିଥାଏ ଏକ ଦଣ୍ଡ । ଦଣ୍ଡ ଉପରେ ପାତ୍ରଟିଏ ରଖାଯାଇଥାଏ । ଦଣ୍ଡଟିରେ ଗୁଡ଼େଇ ହୋଇ ରହିଥାଏ ଏକ ସାପ । ଏହି ସଂକେତକୁ ସାରା ବିଶ୍ୱରେ ଚିକିତ୍ସା ବିଜ୍ଞାନର ସଂକେତ ରୂପେ ସ୍ୱୀକୃତି ମିଳିଛି । ଉକ୍ତ ସଂକେତର ଡିଜାଇନ୍‌ରେ ହୁଏତ ବିଭିନ୍ନ ପରିବର୍ତ୍ତନ ଲକ୍ଷ୍ୟ କରାଯାଇପାରେ । କିନ୍ତୁ ଏହାର ମୌଳିକତା ସବୁ ସଂକେତରେ ସମାନ । ତେବେ ଚିକିତ୍ସା ବିଜ୍ଞାନର ସଂକେତରେ ସାପ ପ୍ରଦର୍ଶିତ ହୋଇଛି କାହିଁକି ?

ଗ୍ରୀକ୍ ପୁରାଣରେ ଏଥେନାଙ୍କୁ 'ଜ୍ଞାନଦେବୀ', ହାଇଜିଆଙ୍କୁ 'ସ୍ୱାସ୍ଥ୍ୟଦେବୀ' ଓ ଇସ୍କୁଲାପିୟସ୍‌ଙ୍କୁ 'ଔଷଧପତ୍ରର ଦେବତା'' ରୂପେ ଅଭିହିତ କରାଯାଇଛି । ଏଥେନା, ହାଇଜିଆ ଓ ଇସ୍କୁଲାପିୟସ୍‌ଙ୍କ ଛବି କିମ୍ବା ମୂର୍ତ୍ତିସହ ସବୁବେଳେ ସାପର ଛବି କିମ୍ବା ମୂର୍ତ୍ତି ଶୋଭା ପାଉଥିଲା । ଗ୍ରୀକ୍‌ମାନେ ବିଶ୍ୱାସ କରନ୍ତି ଯେ ଗ୍ରୀସ୍‌ର ଏପିଡରସ୍ ନାମକ ସ୍ଥାନ ଇସ୍କୁଲାପିୟସ୍‌ଙ୍କ ଜନ୍ମସ୍ଥଳୀ । ସେଠାରେ ତାଙ୍କ ସମ୍ମାନରେ ଏକ ବିରାଟ ମନ୍ଦିର ନିର୍ମାଣ କରାଯାଇଥିଲା । ଉକ୍ତ ମନ୍ଦିର ବେଢ଼ାକୁ ବିରାଟ ବିରାଟ ପୋଷା ସାପମାନଙ୍କର ଅବାଧ ଗତାଗତ ଥିଲା ବୋଲି କୁହାଯାଇଥାଏ । ସେହି ସାପଗୁଡ଼ିକୁ କୁହାଯାଉଥିଲା ଇସ୍କୁଲାପିୟସ୍‌ଙ୍କ ସାପ । ସେମାନଙ୍କୁ ଦେବତାଙ୍କ ଅବତାର ରୂପେ ମନେ କରାଯାଉଥିଲା । ସେହି ସାପମାନଙ୍କର କୁଆଡ଼େ ରୋଗ ଆରୋଗ୍ୟ କରିବାର ଅଦ୍ଭୁତ ଶକ୍ତି ଥିଲା । ତେଣୁ ପରବର୍ତ୍ତୀକାଳରେ ଇସ୍କୁଲାପିୟସ୍‌ଙ୍କ ସାପକୁ ଚିକିତ୍ସା ଶାସ୍ତ୍ରର ସଙ୍କେତ ରୂପେ ଆନ୍ତର୍ଜାତିକ ସ୍ୱୀକୃତି ମିଳିଲା ।



# ଅଣ୍ଡାଖିଆ ସାପ

କୁକୁଡ଼ା ଘରେ ସାପ ପଶି କୁକୁଡ଼ା ଅଣ୍ଡା ଖାଇଯାଉଥିବା ଅତି ସାଧାରଣ କଥା । ବହୁ ସାପ ଚଢ଼େଇ ବସାରୁ ଅଣ୍ଡା ଖାଇ ଯାଇଥାନ୍ତି । କିନ୍ତୁ ଆଫ୍ରିକା ଆଉ ଭାରତରେ ଏପରି କେତେକ ଜାତିର ସାପ ଅଛନ୍ତି, ଯେଉଁମାନେ ଅଣ୍ଡା ଛଡ଼ା ଆଉ କିଛି ଖାଦ୍ୟ ଖାଆନ୍ତି ନାହିଁ । ବେଙ୍ଗ କି ମୂଷାକୁ ଆଡ଼ ଆଖିରେ ଚାହାନ୍ତି ନାହିଁ ବି ଟିକିଏ । ଅଣ୍ଡା ନ ପାଇଲେ ସେଦିନ ଖାଡ଼ା ଖାଡ଼ା ଉପାସ । ପ୍ରକୃତି ମଧ୍ୟ ସେମାନଙ୍କୁ ସେହିଭଳି ଭାବରେ ଗଢ଼ିଛି ।

ଆଫ୍ରିକାରେ ରହିଛନ୍ତି ପାଞ୍ଚ ଜାତିର ଅଣ୍ଡାଖିଆ ସାପ । ଆମ ଦେଶରେ ମାତ୍ର ଗୋଟିଏ ଜାତିର ଅଣ୍ଡାଖିଆ ସାପ ରହିଛି । ଆମ ଦେଶର ପଶ୍ଚିମବଙ୍ଗ ଓ ବିହାରରେ ଏମାନେ ଦେଖାଯାଇଥାନ୍ତି । ତେବେ ଭାରତୀୟ ଅଣ୍ଡାଖିଆ ସାପଙ୍କର ନାଡ଼ିନକ୍ଷତ୍ର ବିଷୟରେ ବିଶେଷ କିଛି ଜଣାନାହିଁ । ତେଣୁ ଆଫ୍ରିକାରେ ରହିଥିବା ଏମାନଙ୍କ ଜାତିଭାଇଙ୍କର ଚାଲିଚଳନ ସହ ଏମାନଙ୍କର କିଛି ମେଳ ଥିବ ବୋଲି ଧରି ନିଆଯାଇଛି ।

ଏହି ସାପର ଲମ୍ବ ପାଖାପାଖି ଅଢ଼େଇ ଫୁଟ । ଦେଖିବାକୁ ସରୁ, ମୁହଁଟି ଗୋଜିଆ ନ ହୋଇ ପ୍ରାୟ ଗୋଲାକାର । ମୁଣ୍ଡଟି ବେଶ ସରୁ ଓ ମୁଣ୍ଡ ଏବଂ ବେକକୁ ଅଲଗାଅଲଗା ଠଉରେଇ ହୁଏ ନାହିଁ । କାହାର କାହାର ଦେହର ରଙ୍ଗ ପାଉଁଶିଆ ତ ଆଉ କାହାର ବାଦାମୀ । ପିଠି ଉପରେ କଳା କଳା ଦାଗ । କେନିଆ ଓ ମୋଜାମ୍ବିକରେ ଦେଖାଯାଉଥିବା ଏହି ଧରଣର ସାପ ଦେଖିବାକୁ ନାଲିଆସିଆ ଓ ତାର ପିଠି ଉପରେ ପଟି ପଟି ଦାଗ ଥାଏ ।

ଏହି ସାପ ଦିନବେଳା ଅଳସୁଆ ହୋଇ ପଡ଼ି ରହିଥାଏ । ରାତି ଆସିଗଲେ ବାହାରି ପଡ଼େ ଅଣ୍ଡା ଖୋଜି । ରାତି ସାରା ବୁଦା ଆଉ ଗଛ ବୁଲିବୁଲି ଅଣ୍ଡା ପାଇଁ ଚଢ଼େଇ ବସା ଦରାଣ୍ଡିଥାଏ । ଅଣ୍ଡାଖିଆ ସାପ ମଣିଷର କିଛି କ୍ଷତି କରେ ନାହିଁ ; ତାର ବିଷ ନାହିଁ । ପୁଣି ଦାନ୍ତଯାକ ରହିଛି ପାଟିର ପଛ ଆଡ଼କୁ । ତେଣୁ ଏହି ସାପ କାମୁଡ଼ିଲେ ଚମ ଉପର ଖଣ୍ଡିଆ ହେବାର ସମ୍ଭାବନା ବି ନ ଥାଏ ।

## ସାପ ଅଣ୍ଡା ଖାଏ କିପରି ?

ସାପର ମୁଣ୍ଡ ଆଉ ବେକ ଆମ ବୁଢ଼ାଆଙ୍ଗୁଠି ମୋଟ ହେବ କି ନାହିଁ ସନ୍ଦେହ । ତଥାପି ସେ ଯୋଡ଼ିଏ କୁକୁଡ଼ା ଅଣ୍ଡାକୁ ଖୁବ୍ ସହଜରେ ଗିଳିଦିଏ । କାରଣ ତା ପାଟିଟିକୁ ପ୍ରକୃତି ସେହିପରି ଭାବରେ ତିଆରି କରିଛି । ତଳ ମାଢ଼ି ଆଉ ଉପର ମାଢ଼ି ଭିତରେ ସତେ ଯେମିତି ଲାଗିଛି କବ୍‌ଜା । ଚାହିଁଲେ ଅଳ୍ପ ମେଲା ହୋଇପାରିବ, ଚାହିଁଲେ ବେଶୀ

ମେଲା ହୋଇପାରିବ । ଅଣ୍ଡାକୁ ଗିଳିବାବେଳେ ମୁଣ୍ଡ ଆଉ ବେକର କାତି ଟାଣି ହୋଇଯାଏ, ତଳେ ଥିବା ଚମ ଟାଣ ହୋଇ ମୁହଁ ଦେଖିହେଉଥିବା କାଗଜ ଭଳି ପତଳା ହୋଇଯାଏ ।

ସାପ ରାତିବେଳା ହିଁ ଅଣ୍ଡା ଖୋଜିବୁଲେ । ଅଣ୍ଡାର ଗନ୍ଧ ସେ ଖୁବ୍ ସହଜରେ ବାରିପାରେ । ଅଣ୍ଡା ପାଖରେ ପହଞ୍ଚିଯାଇ ପ୍ରଥମେ ନିଜ ଜିଭରେ ଅଣ୍ଡାର ଭଲ ମନ୍ଦ ପରଖି ନିଏ । ଅଣ୍ଡା କାଞ୍ଜିଆ ହୋଇଯାଇଥିଲେ ସେ ଅଣ୍ଡାକୁ ଖାଏନାହିଁ । ତାହାଛଡ଼ା ଅଣ୍ଡା ଉପରେ ନିଜର ବେକ ଆଉ ମୁଣ୍ଡକୁ ଏପଟ ସେପଟ କରି ଅଣ୍ଡାର ଆକାର ମାପିନିଏ । ଅଣ୍ଡାଟିର ଆକାର ବେଶ୍ ବଡ଼ ହୋଇଥିଲେ ସେଭଳି ଅଣ୍ଡାକୁ ଗିଳିବାକୁ ମନ କରେନି ସେ ।

ଅଣ୍ଡା ତାର ମନକୁ ପାଇଗଲେ ସେ ପ୍ରଥମେ ଅଣ୍ଡାକୁ ମଝିରେ ରଖି ତାର ଚାରିପାଖେ ଗୁଡ଼େଇ ହୋଇଯାଏ । ଫଳରେ ଅଣ୍ଡାଟି ଆଉ ଟଳଟଳ ହୋଇପାରେ ନାହିଁ । ତା'ପରେ ପାଟି ଆଁ କରି କେତେ ଥର ହାଇମାରେ । ଖେଳାଳିମାନେ ଖେଳ ଆରମ୍ଭ କରିବା ପୂର୍ବରୁ ଯେପରି ଗୋଡ଼ହାତ ଛଟାଛଟି କରି ନିଜକୁ ପ୍ରସ୍ତୁତ କରିଥାନ୍ତି, ଏହା ଠିକ୍ ସେଇଭଳିଆ । ହାଇମାରିଲେ ପାଟିଟା ଟିକିଏ ବେଶୀ ମେଲା ହୋଇଯାଏ । ହାଇ ମାରିସାରି ସାପ ଅଣ୍ଡାର ଗୋଟିଏ ମୁଣ୍ଡକୁ ଗିଳିବାକୁ ଆରମ୍ଭ କରେ । ଧୀରେ ଧୀରେ ଢୋକିଲା ଭଳି କରିବା ଫଳରେ ଅଣ୍ଡାଟି ଆସ୍ତେ ଆସ୍ତେ ପାଟିର ଭିତରକୁ ଭିତରକୁ ପଶିବାରେ ଲାଗେ ।

ଅଣ୍ଡାଟିଏ ଗିଳିବାକୁ ସାପକୁ ଲାଗେ ପ୍ରାୟ ପନ୍ଦର ମିନିଟ ସମୟ । କିନ୍ତୁ ତା ପାଟିରେ ଅଣ୍ଡାଟି ଫାଟେ କିପରି ? ଅଣ୍ଡାଖିଆ ସାପର ପାଟିରେ ରହିଛି ପାଖାପାଖି ୩୦ଟି ଦାନ୍ତ । ଦାନ୍ତଗୁଡ଼ିକ ବାହାରିଥାଏ ଉପର ପାଟିରୁ । ଏହାର ପ୍ରଥମ ୧୭-୧୮ଟି ଦାନ୍ତ ଲମ୍ବା ଓ ଛୁରୀ ଭଳି । ତା' ପଛକୁ ଥିବା ଦାନ୍ତ କେତୋଟିର ଉପର ଓସାରିଆ ଓ ଚଟକା । ବାକି ଛଅ ସାତଟା ଦେଖିବାକୁ ମୋଟା ପେଚ ଭଳି । ଅଣ୍ଡାଟି ପାଟିରେ ଥିବାବେଳେ ଗଳାର ମାଂସପେଶୀମାନେ ସଙ୍କୁଚିତ ହୋଇ ଅଣ୍ଡାଟିକୁ ଦାନ୍ତ ସାଙ୍ଗରେ ଚାପି ରଖିଥାନ୍ତି । ଅଣ୍ଡାଟି ଦୃଢ଼ ଭାବରେ ରହିଗଲା ପରେ ସାପ ଭୂମି ଉପରୁ ତାର ମୁଣ୍ଡ ଉଠାଇ ମୁଣ୍ଡକୁ ଆଗପଛ କରିଥାଏ । ଏହାଦ୍ୱାରା ଛୁରୀଭଳି ଦାନ୍ତଗୁଡ଼ିକ ଅଣ୍ଡାର ଖୋଳପାକୁ କାଟି ଦେବାରେ ସୁବିଧା ହୁଏ । ଖୋଳପା କଟିଗଲେ ଅଣ୍ଡା ଭିତରୁ ଲାଳୁଆ ପଦାର୍ଥ ଓ କେଶର ବାହାରି ଆସେ । ତାପରେ ସାପ ମୁଣ୍ଡ ଉଠାଇ ପଛପଟକୁ ବଙ୍କା କରିଦିଏ । ଏଭଳି କଲେ ଅଣ୍ଡାର ଖୋଳପା ଚଟକା ଦାନ୍ତ ଦ୍ୱାରା ଚାପି ହୋଇଯାଏ ଓ ଗୁଡ଼େଇ ହୋଇଯାଏ । ଅଣ୍ଡାରୁ ବାହାରୁଥିବା ଜିନିଷକୁ ଢୋକିଦେଲେ ତାହା ପାକସ୍ଥଳୀ ଭିତରକୁ ଚାଲିଯାଏ । ପାକସ୍ଥଳୀ ମୁହଁରେ ରହିଛି କବାଟ ଭଳି ଏକ ପରଦା । ଏହା କେବଳ ପାକସ୍ଥଳୀ ଭିତରକୁ ଖୋଲେ । ତେଣୁ ପାକସ୍ଥଳୀ ଭିତରେ ଯାହା ରହିଥାଏ, ତାହା ପାକସ୍ଥଳୀରୁ ପାଟି ଭିତରକୁ ଆସିପାରେ ନାହିଁ । ପରେ ପରେ ସାପଟି ଗୁଡ଼େଇ ହୋଇ ଯାଇଥିବା ଅଣ୍ଡାର ଖୋଳପାକୁ ପାଟି ଭିତରୁ ବାହାର କରିଦିଏ ।

ଅଣ୍ଡାଖିଆ ସାପ କେବଳ ଅଣ୍ଡା ଖାଇ ବଞ୍ଚୁଥିଲେ ମଧ୍ୟ ତା'ପାଇଁ କେବେ ଅଣ୍ଡାର ଅଭାବ ହୁଏନି । କାରଣ ଘଞ୍ଚ ଜଙ୍ଗଲରେ ବର୍ଷସାରା କୌଣସି ନା କୌଣସି ଚଢ଼େଇ ଅଣ୍ଡା ଦେଇଥାଏ । ତଥାପି ପଶ୍ଚିମ ଆଫ୍ରିକା ଓ ଭାରତରେ ବର୍ଷସାରା ଚଢ଼େଇ ଅଣ୍ଡା ମିଳିବା କଷ୍ଟ । ତେଣୁ ଅଣ୍ଡାଖିଆ ସାପ ଅଣ୍ଡା ଖାଇବାକୁ ନ ପାଇ କେତେଦିନ ଉପାସରେ କଟେଇବାକୁ ବାଧ୍ୟ ହୁଏ । ଏହି ସମୟରେ ତା' ଦେହରେ ଜମିଥିବା ଚର୍ବି ହିଁ ତାକୁ ଶକ୍ତି ଯୋଗାଇଥାଏ ।

## ଅଣ୍ଡାଖିଆ ସାପର ଅଣ୍ଡା :

ଏହି ସାପ ପ୍ରାୟ ୧୨ରୁ ୧୫ଟି ପର୍ଯ୍ୟନ୍ତ ଅଣ୍ଡା ଦେଇଥାଏ । ସବୁଯାକ ଅଣ୍ଡା ଗୋଟିଏ ଜାଗାରେ ଏକତ୍ର ନ ରହି ଅଲଗା ଅଲଗା ଜାଗାରେ ମେଞ୍ଚା ମେଞ୍ଚା ହୋଇ ରହିଥାଏ । ଅଣ୍ଡା ଫୁଟି ଛୁଆ ବାହାରିବା ନିମନ୍ତେ ଲାଗିଯାଏ ତିନିରୁ ଚାରିମାସ । ଅଣ୍ଡାରୁ ସାଙ୍ଗେ ସାଙ୍ଗେ ବାହାରିଥିବା ସାପ ଛୁଆର ଲମ୍ବ ଥାଏ ୯ ରୁ ୧୦ ଇଞ୍ଚ । ଏହି ଛୋଟ ଛୁଆ ପୁଣି ଖାଏ କଣ ? ସେମାନେ କଣ ନିଜ ନିଜର କୁନି କୁନି ପାଟିରେ ଅଣ୍ଡା ଗିଳି ପାରୁଥିବେ ? ହୁଏତ ସେମାନେ ଚଢ଼େଇର ଛୋଟ ଛୋଟ ଅଣ୍ଡା ଖୋଜି ଖାଉଥିବେ ।

## ବିଷ ସିନା ନାହିଁ ଫଁ ବେଶୀ :

ଅଣ୍ଡାଖିଆ ସାପର ସିନା ବିଷ ନାହିଁ; କିନ୍ତୁ ବିପଦ ପଡ଼ିଲେ ସେ ତା' ଦେହର ସାମନାପଟକୁ ଫୁଲାଇ ଦିଏ ଓ ଖୁବ୍ ଜୋରରେ ଫଁ ଫଁ ଶବ୍ଦ କରେ । ତା'ପରେ ଦେହକୁ ଗୁଡ଼େଇ ଦିଏ ଓ ଜୋରରେ ଚୋଟ ମାରେ । ନାଗ, ତମ୍ପ ଭଳି ଚୋଟ ବସେଇ ଦିଏ ସିନା, ତାଦ୍ୱାରା ଚୋଟ ଖାଇଥିବା ଲୋକର କିଛି କ୍ଷତି ହୁଏ ନାହିଁ । ତେବେ ସାପ ଭଲ ଭାବରେ ନିଜକୁ ଗୁଡ଼େଇ ପାରେନି । ଗୁଡ଼େଇ ହେବାକୁ ଚେଷ୍ଟା କରିବା ମାତ୍ରେ ତା ଦେହ ଇଂରାଜୀ ଅକ୍ଷର 'C' ଭଳି ମୋଡ଼ି ମୋଡ଼ି ହୋଇଯାଏ ।

## ଛଦ୍ମବେଶୀ ସାପ :

ଅଣ୍ଡାଖିଆ ସାପର ତ ବିଷ ନାହିଁ । କିନ୍ତୁ ଏହି ସାପର ଦେହର ଗଠନ ବିଷଥିବା ସାପର ଦେହର ଗଠନ ଭଳି । ତେଣୁ ଏହାକୁ ଦେଖିଦେଲେ ବିଷାକ୍ତ ସାପ ବୋଲି ମନରେ ଡର ଆସିଯାଏ । ତାହାଛଡ଼ା ଏହି ସାପ ନିଜର ପରିବେଶ ସହ ଖାପ ଖୁଆଇବାରେ ଧୁରନ୍ଧର । ମିଶର, ତାଞ୍ଜାନିଆ, ଦକ୍ଷିଣ ଆଫ୍ରିକା, ରୋଡ଼େସିଆ ଦେଶମାନଙ୍କରେ ଦେଖା ଯାଉଥିବା ଅଣ୍ଡାଖିଆ ସାପ ସେହି ସବୁ ଦେଶରେ ଦେଖିବାକୁ ମିଳୁଥିବା ବିଷାକ୍ତ ବୋଡ଼ା

ସାପଭଳି । ଏହାର କେତେକ ପ୍ରକୃତି ମଧ୍ୟ ବୋଡ଼ା ସାପର ପ୍ରକୃତି ସାଙ୍ଗରେ ମିଳିଯାଏ । ବିଷାକ୍ତ ସାପଭଳି ଦେଖା ଯାଉଥିବାରୁ ଏହା ବେବୁନ ଭଳି ଅନ୍ୟ କେତେକ ଜନ୍ତୁଙ୍କ ଆକ୍ରମଣରୁ ରକ୍ଷା ପାଇଯାଏ ସିନା, କିନ୍ତୁ ଏହି ସାପକୁ ଖାଇଯାଉଥିବା କେତେକ ଧରଣର ସାପକୁ ଠକି ଦେଇପାରେ ନାହିଁ । ମଣିଷ ପାଖରେ ମଧ୍ୟ ତାର ବୁଦ୍ଧି ହାର ମାନିଛି । କାରଣ ସାପ ଦେଖିଲେ ତ ମଣିଷ ସାପକୁ ଗୋଡ଼େଇ ଗୋଡ଼େଇ ମାରୁଛି । ବିଷଧର ସାପ ବୋଲି ସନ୍ଦେହ ହେଲେ ତାର ଅବସ୍ଥା କହିଲେ ନ ସରେ । ତେଣୁ ଅଣ୍ଡାଖିଆ ସାପ ମଣିଷ କବଳରୁ ମୁକ୍ତି ପାଇପାରୁ ନାହିଁ ।



## ପୃଥିବୀର ସବୁଠାରୁ ଛୋଟ ବିଷାକ୍ତ ସାପ –

# ଆଡ଼ର୍

ଆଡ଼ର୍ ହେଉଛି ବୋଡ଼ା ଜାତୀୟ ସାପ । ଦକ୍ଷିଣ ଆଫ୍ରିକାରେ ଛଉଛଉକା ଦେଖାଯାଉଥିବା ବାଙ୍ଗରା ଆଡ଼ର୍ ପୃଥିବୀର ବିଷାକ୍ତ ସାପମାନଙ୍କ ଭିତରେ ବୋଧହୁଏ ସବୁଠାରୁ ଛୋଟ । ଏଭଳି ଜାତିର ବୟସ୍କ ସାପର ଲମ୍ବ ପାଖାପାଖି ନଅ ଇଞ୍ଚ ମାତ୍ର ।

### ଶରୀର ବର୍ଣ୍ଣନା :

ଆଡ଼ର୍‌ର ଶରୀର ବେଶ୍ ବଳିଷ୍ଠ । କିନ୍ତୁ ଏହାର ଲାଞ୍ଜ ଅପେକ୍ଷାକୃତ କ୍ଷୁଦ୍ର । ଅଣ୍ଡିରା ଆଡ଼ର୍‌ର ଲମ୍ବ ହାରାହାରି ୨୧ ଇଞ୍ଚ ହୋଇଥିବା ସ୍ଥଳେ ମାଈ ଆଡ଼ର୍‌ର ହାରାହାରି ଲମ୍ବ ୨୪ ଇଞ୍ଚ । ଏହି ସାପର ମୁଣ୍ଡ ଚେପ୍‌ଟା ଓ ମୁଣ୍ଡଟି ଗୋଟିଏ ତୀର ଭଳି ଦେଖାଯାଏ ।



ଆଡ଼ର

ଜାତି ଭେଦରେ ଆଡ଼ର୍‌ର ରଙ୍ଗ ଓ ଦେହରେ ଦେଖାଯାଉଥିବା ଦାଗରେ ବହୁ ପାର୍ଥକ୍ୟ ପରିଲକ୍ଷିତ ହୁଏ । ତାହାଛଡ଼ା ମାଈ ଓ ଅଣ୍ଡିରା ଆଡ଼ର୍‌ର ରଙ୍ଗ ଅଲଗା ଅଲଗା ।

ଅଣ୍ଡିରା ଆଡ଼ର୍‌ର ରଙ୍ଗ ମାଟିଆସିଆ, ହଳଦିଆ କିମ୍ବା ଧଳାଆସିଆ ଧୂସର । ଦେହ ଉପରେ କଳା କଳା ଦାଗ । କିନ୍ତୁ ମାଈ ଆଡ଼ର୍‌ର ରଙ୍ଗ ଲାଲ୍ କିମ୍ବା ନାଲିଆସିଆ ଧୂସର କିମ୍ବା ସୁନେଲି । ତା'ର ଦେହ ଉପରେ ଥାଏ ଗାଢ଼ ଲାଲ କିମ୍ବା ମାଟିଆ ଦାଗ । ଅଣ୍ଡିରା ଆଡ଼ର୍‌ର ତଣ୍ଟି ପାଖର ରଙ୍ଗ ଧଳା କିମ୍ବା କଳା ହୋଇପାରେ । କିନ୍ତୁ ମାଈ ଆଡ଼ର୍‌ର ତଣ୍ଟି ପାଖର ରଙ୍ଗ ହଳଦିଆ ମିଶା ଧଳା, ବେଳେବେଳେ ତାହା ନାଲିଆସିଆ ମଧ ଦେଖାଯାଇପାରେ ।

## ବାସସ୍ଥାନ :

ଆଡ଼ର୍ ସାଧାରଣତଃ ଇଉରୋପ୍ ମହାଦେଶରେ ଦେଖାଯାଇଥାଏ । ତେବେ ଜାପାନର ଉତ୍ତରରେ ଥିବା ସାଖାଲିନ୍ ଦ୍ୱୀପରେ ମଧ୍ୟ ଏମାନଙ୍କୁ ଦେଖିବାକୁ ମିଳେ । ଆୟର୍ଲାଣ୍ଡ଼ରେ ଆଡ଼ର୍ ଆଦୌ ଦେଖାଯାଉ ନଥିଲେ ମଧ୍ୟ ସ୍କଟ୍‌ଲ୍ୟାଣ୍ଡ୍‌ରେ କେବଳ ଆଡ଼ରମାନଙ୍କୁ ହିଁ ଦେଖିବାକୁ ମିଳେ ।

## ଚାଲିଚଳନ :

ଆଡ଼ର୍‌ମାନେ ପ୍ରାୟତଃ ଶୁଖିଲା ଜାଗାମାନଙ୍କରେ ବାସ କରନ୍ତି । ବାଲିଗଦା, ପାହାଡ଼, ମୁଣ୍ଡିଆ, କାଠଗଡ଼ ଇତ୍ୟାଦି ଉପରେ ରହି ଆଡ଼ର ଖରାପୁଆଉଥିବାର ଦେଖାଯାଏ । କେତେବେଳେ କେମିତି ସେମାନଙ୍କୁ ସନ୍ତସନ୍ତିଆ ଜାଗାମାନଙ୍କରେ ମଧ ଦେଖିବାକୁ ମିଳେ ।

ଥଣ୍ଡା ସହି ପାରୁଥିବାରୁ ମେରୁ ଅଞ୍ଚଳରେ ମଧ ଆଡ଼ର୍ ତିଷ୍ଠି ରହିପାରେ । ବାୟୁର ତାପମାତ୍ରା ୪ ଡିଗ୍ରୀ ସେଣ୍ଟିଗ୍ରେଡ୍‌ରୁ ତଳକୁ ଖସିଗଲେ ଆଡ଼ର୍ ଗାତ ଭିତରେ ନିଷ୍କ୍ରିୟ ଅବସ୍ଥାରେ ପଡ଼ିରହେ ଓ ତାପମାତ୍ରା ୮ ଡିଗ୍ରୀ ସେଣ୍ଟିଗ୍ରେଡ଼ରେ ପହଞ୍ଚିଗଲେ ଗାତ ଭିତରୁ ପଦାକୁ ବାହାରି ଆସେ । ବେଳେବେଳେ ବରଫ ଉପରେ ଆତଯାତ ହେଉଥିଲେ ମଧ ସଦ୍ୟ ତୁଷାରପାତ ହୋଇ ଥଣ୍ଡା ମାଡ଼ି ଆସିଲେ ଆଡ଼ର୍ ପୁଣି ଗାତ ଭିତରକୁ ପଶିଯାଇ ଆଶ୍ରୟ ନିଏ । ଏହି ନିଷ୍କ୍ରିୟ ଅବସ୍ଥାକୁ ଶୀତସୁପ୍ତି ବା ହାଇବର୍‌ନେସନ୍ ବୋଲି କୁହାଯାଇଥାଏ । ଇଉରୋପର ଉତ୍ତରାଞ୍ଚଳରେ ବର୍ଷକୁ ପ୍ରାୟ ୨୭୫ ଦିନ ପର୍ଯ୍ୟନ୍ତ ଆଡ଼ର୍ ନିଷ୍କ୍ରିୟ ଅବସ୍ଥାରେ କଟାଉଥିବା ବେଳେ ଇଉରୋପର ଦକ୍ଷିଣାଞ୍ଚଳରେ ଆଡ଼ର୍‌ର ଏହି ଶୀତ-ସୁପ୍ତି କାଳ ପାଖାପାଖି ୧୦୫ ଦିନ । ପାଗ ପରିବର୍ତ୍ତନକୁ ଚାହିଁ ବ୍ରିଟେନ୍‌ରେ ଅକ୍ଟୋବରରୁ ମାର୍ଚ୍ଚ ଭିତରେ ଆଡ଼ର୍ ପ୍ରାୟ ୧୩୫ ଦିନ ପର୍ଯ୍ୟନ୍ତ ଶୀତ ସୁପ୍ତିରେ କଟାଇଦିଏ ।

ଅନ୍ୟ କେତେକ ଜାତିର ସାପମାନଙ୍କ ଭଳି ଆଡ଼ର୍ ନିଜେ ଗାତ ଖୋଳେନାହିଁ । ତେଣୁ ଫାଟଜାଗା ଏବଂ ଖାଲୁଆ ଜାଗାରେ ଆଡ଼ର ଶୀତକାଳ କଟାଇଥାଏ । ବାୟୁର

ତାପମାତ୍ରାକୁ ଚାହିଁ ଆଡର୍ ବେଳେବେଳେ ଦଶବାର ଇଞ୍ଚ ଗାତ ଭିତରେ ଆଶ୍ରୟ ନେଇଥାଏ । ଡେନ୍‌ମାର୍କ ଭଳି ଅତି ଥଣ୍ଡା ପରିବେଶରେ ଏହା ୪ ଫୁଟ ପର୍ଯ୍ୟନ୍ତ ଗଭୀର ଗାତ ଭିତରେ ଆଶ୍ରୟ ନିଏ । ଏପରିକି ସମୟେ ସମୟେ ଏକାଧିକ ଆଡ଼ର ଗୋଟିଏ ଗାତ ଭିତରେ ଏକତ୍ର ରହି ଶୀତଋତୁ କଟାଇ ଦିଅନ୍ତି । ବେଳେବେଳେ ଚାଳିଶ ପର୍ଯ୍ୟନ୍ତ ଆଡ଼ର୍ ଛନ୍ଦାଛନ୍ଦି ହୋଇ ଏକ ପିଣ୍ଡୁଳାଭଳି ରହିଥିବାର ଦେଖାଯାଇଥାଏ । ଏଭଳି ଛନ୍ଦାଛନ୍ଦି ହୋଇ ରହିବା ଫଳରେ ଶରୀରର ତାପହ୍ରାସ ପ୍ରକ୍ରିୟା ବାଧାପ୍ରାପ୍ତ ହୋଇଥାଏ । ତେବେ ଏତେଗୁଡ଼ିଏ ଆଡ଼ର୍ ଏକ ନିର୍ଦ୍ଦିଷ୍ଟ ଗାତକୁ ଚିହ୍ନିପାରି ତା ଭିତରେ କିପରି ଆଶ୍ରୟ ନିଅନ୍ତି ତାହା ସର୍ପ ବିଶେଷଜ୍ଞମାନଙ୍କ ପାଇଁ ଏକ ବିସ୍ମୟ । ହୁଏତ ପୂର୍ବବର୍ଷ ଆଶ୍ରୟ ନେଇଥିବାବେଳେ ଗାତରେ ରହିଯାଇଥିବା ଗନ୍ଧକୁ ବାରି ପରବର୍ତ୍ତୀ ବର୍ଷମାନଙ୍କରେ ସେମାନେ ଗାତକୁ ଚିହ୍ନିପାରିବାକୁ ସକ୍ଷମ ହେଉଥିବେ ।

ଆଡ଼ର୍‌ମାନେ ଦିବାଚର କି ନିଶାଚର ତାହା ସଠିକ୍‌ଭାବରେ ଜଣାପଡ଼ିନାହିଁ । ଆଡ଼ର୍‌ମାନଙ୍କ ଚକ୍ଷୁର ମୁକୁରିକା ବା ରେଟିନାରେ 'ରଡ୍' କୋଷମାନଙ୍କର ସଂଖ୍ୟା ଅଧିକ ଥିବାରୁ ଆଡ଼ର୍‌କୁ ରାତିରେ ଦେଖିବାରେ ସୁବିଧା ହୋଇଥାଏ । ଅପର ପକ୍ଷରେ ଆଡ଼ର ଚକ୍ଷୁର ପୁଅଡୋଳା ବା ପ୍ୟୁପିଲ ଗୋଲାକାର ନହୋଇ ଏକ ଫାଟଭଳି ହୋଇଥିବାରୁ ତାହା ଦିନର ଆଲୋକକୁ ନିୟନ୍ତ୍ରଣ କରିବାରେ ଅଧିକ ସହାୟକ । ତେବେ ଖାଦ୍ୟ ଅନ୍ବେଷଣ କରିବା ତଥା ମିଳନ ପ୍ରକ୍ରିୟାରେ ଲିପ୍ତ ରହିବା ପ୍ରକ୍ରିୟା ପ୍ରାୟତଃ ଦିନବେଳା ହିଁ ସଂପାଦିତ ହୋଇଥାଏ ।

## ଖାଦ୍ୟ ଗ୍ରହଣ :

ବୟସ୍କ ଆଡ଼ର୍ ସାଧାରଣତଃ ଝିଟିପିଟି, ମୂଷା ଓ ଚୁଚୁନ୍ଦ୍ରା ମାନଙ୍କୁ ଶିକାର କରିଥାଏ । କିନ୍ତୁ ଆଡ଼ର୍ ଛୁଆମାନେ ପ୍ରଥମେ ପୋକଜୋକ ଖାଇଥାନ୍ତି । ଶିକାରକୁ କାମୁଡ଼ି ଧରିଲେ ଆଡ଼ର୍‌ର ବିଷ ଶିକାର ଦେହରେ ପ୍ରବେଶ କରି ତାକୁ ମାରିଦିଏ । ଶିକାରର ଆକାରକୁ ଚାହିଁ ଆଡ଼ର ଶିକାର ଶରୀରରେ ପ୍ରବେଶ କରୁଥିବା ବିଷର ପରିମାଣକୁ ନିୟନ୍ତ୍ରଣ କରେ । ଆଡ଼ର୍ ବିଷର ପ୍ରଭାବରେ ଝିଟିପିଟିମାନେ ଅଳ୍ପ କେତୋଟି ସେକେଣ୍ଡ ଭିତରେ ମରିଯାଉଥିବା ବେଳେ ଆଡ଼ର୍ କାମୁଡ଼ାରେ ମଣିଷ ମରିଯିବାର ସମ୍ଭାବନା କମ୍ ।

ଶିକାରର ଗନ୍ଧ ବାରି ଆଡ଼ର୍ ଶିକାରର ପିଛା କରେ । ଶିକାର ପାଖରେ ପହଞ୍ଚିଯାଇ ତା' ଉପରେ ଜୋର୍‌ରେ ଚୋଟ ବସାଇଦିଏ । ଶିକାରଟି ସାପଚୋଟରେ ଆହତ ହୋଇ ପଳାଇଲେ ଆଡ଼ର୍ କିଛି ସମୟ ଅଟକିଯାଇ ପରେ ମୃତ ଶିକାରକୁ ଖୋଜି ଆହାର କରିଥାଏ ।

## ପ୍ରଜନନ :

ସାଧାରଣତଃ ମାର୍ଚ୍ଚମାସ ଶେଷଭାଗରୁ ଆରମ୍ଭକରି ମେ' ମାସର ପ୍ରଥମ ଭାଗ ଭିତରେ ଅଣ୍ଡିରା ଓ ମାଈ ଆଡ଼ର୍ ମିଳିତ ହୋଇଥାନ୍ତି । ଇଉରୋପର ଉତ୍ତରାଞ୍ଚଳରେ ଗ୍ରୀଷ୍ମଋତୁ ଅଳ୍ପକାଳ ପାଇଁ ସ୍ଥାୟୀ ହୋଇଥିବାରୁ ଆଡ଼ର୍ ଶରୀର ଭିତରେ ଅଣ୍ଡାର ବିକାଶ ବିଳମ୍ବିତ ହୋଇଯାଏ । ତେଣୁ ସେପରି ସ୍ଥାନମାନଙ୍କରେ ଆଡ଼ର୍ ପ୍ରତି ଦୁଇବର୍ଷରେ ଥରେ ଛୁଆ ଜନ୍ମ କରୁଥିଲାବେଳେ ଅନ୍ୟ ସ୍ଥାନମାନଙ୍କରେ ଆଡ଼ର୍ ବର୍ଷରେ ଥରେ ଛୁଆ ଜନ୍ମ କରିଥାଏ ।

ପ୍ରଜନନ ଋତୁ ଉପସ୍ଥିତ ହେଲେ ଅଣ୍ଡିରା ଆଡ଼ର୍‌ମାନଙ୍କ ମଧ୍ୟରେ ପ୍ରତିଯୋଗିତା ଆରମ୍ଭ ହୋଇଯାଏ । ସେମାନେ ନିଜ ନିଜର ନିର୍ଦ୍ଦିଷ୍ଟ ଇଲାକା ଅଧିକାର କରିନେଇ ସେହି ଇଲାକାରେ ଅନ୍ୟ ଅଣ୍ଡିରା ଆଡ଼ର୍‌ମାନଙ୍କର ଅନୁପ୍ରବେଶକୁ ବରଦାସ୍ତ କରିପାରନ୍ତି ନାହିଁ । ଦୁଇଟା ଅଣ୍ଡିରା ଆଡ଼ର୍ ମୁହାଁମୁହିଁ ହୋଇଗଲେ ଦୁହିଁଙ୍କ ଭିତରେ ଝଗଡ଼ା ଆରମ୍ଭ ହୋଇଯାଏ । ଉଭୟ ପରସ୍ପର ସହ ଗୁଡ଼େଇ ହୋଇ ଯାଆନ୍ତି । ମୁଣ୍ଡ ସାହାଯ୍ୟରେ ପରସ୍ପରକୁ ଭୂମି ଉପରେ ଚାପିଦେବାକୁ ଚେଷ୍ଟା କରନ୍ତି । କିନ୍ତୁ ଏହି କଳହ ସମୟରେ କେହି କାହାଉପରେ ଚୋଟ ବସେଇବାର ଦେଖାଯାଏନି । କ୍ରମେ ଦୁଇ ପ୍ରତିଦ୍ୱନ୍ଦ୍ୱୀଙ୍କ ମଧ୍ୟରୁ କେହି ଜଣେ ହାରମାନି ସେ ସ୍ଥାନଛାଡ଼ି ପଳାଇଯାଏ । ସାଧାରଣତଃ ଆଖପାଖରେ ଅପେକ୍ଷା କରି ରହିଥାଏ ମାଈ ଆଡ଼ର୍ । ତେଣୁ ବିଜୟୀ ଅଣ୍ଡିରା ଆଡ଼ର ଓ ମାଈ ଆଡ଼ର୍‌ର ମିଳନ ପ୍ରକ୍ରିୟା ସଂପାଦିତ ହୁଏ । ମିଳନ ପରେ ମାଈ ଆଡ଼ର୍‌ର ଶରୀରରେ ଅଣ୍ଡାର ବିକାଶ ଘଟେ । ଅଣ୍ଡାଗୁଡ଼ିକ ସଂପୂର୍ଣ୍ଣ ବିକଶିତ ହେଲାପରେ ମାଈ ଆଡ଼ର୍‌ଠାରୁ ୧୦ରୁ ୧୪ଟି ପର୍ଯ୍ୟନ୍ତ ଛୁଆ ଜନ୍ମ ନିଅନ୍ତି । ସବୁଯାକ ଛୁଆ ଏକାଠି ଗୋଟିଏ ପତଳା ପରଦା ଭିତରେ ରହି ଜନ୍ମ ହୋଇଥାନ୍ତି । ପରେ ଛୁଆମାନଙ୍କୁ ଧାରଣ କରିଥିବା ସେହି ପରଦା ଫାଟିଯିବାରୁ ଛୁଆଗୁଡ଼ିକ ପଦାକୁ ବାହାରି ଯାଆନ୍ତି । ପ୍ରତି ଆଡର ଛୁଆର ଲମ୍ବ ଛଅରୁ ଆଠ ଇଞ୍ଚ ପର୍ଯ୍ୟନ୍ତ ହୋଇଥାଏ । ସଦ୍ୟଜାତ ଆର୍ଡ଼ର ଛୁଆ ନିଜର ଯତ୍ନ ନିଜେ ନେଉଥିଲେ ମଧ କିଛିଦିନ ପାଇଁ ମାଆସହ ରହିବା ପାଇଁ ପସନ୍ଦ କରିଥାଏ ।

ଆଡ଼ର୍ ସ୍ୱଭାବତଃ ଲାଜକୁଳା । ବିପଦର ସୁରାକ୍ ପାଇଲେ ସେ ପଳାଇଯାଏ । କିନ୍ତୁ ହଠାତ୍ ଭୟ ପାଇଗଲେ ସେ କାମୁଡ଼ି ପକାଏ । ତଥାପି ଗଧିଆ ଓ କୋକିଶିଆଳି ଇତ୍ୟାଦି ପ୍ରାଣୀ ଆଡ଼ର୍‌ମାନଙ୍କୁ ମାରି ଦେଇଥାନ୍ତି । ପାଇକ୍‌ମାଛ ଓ ଇଲ୍‌ମାଛର ପାକସ୍ଥଳୀରେ ମଲା ଆଡ଼ର୍‌କୁ ଦେଖିବାକୁ ମିଳୁଥିବାରୁ ସେଭଳି ମାଛ ଆଡ଼ର୍‌ମାନଙ୍କୁ

ଖାଇଦେଉଥିବାର ପ୍ରମାଣ ମିଳୁଛି । ତେବେ ଝିଙ୍କ ହେଉଚି ଆଡ଼ରର ଶତ୍ରୁ । ଝିଙ୍କ ଆଡ଼ର୍ ବିଷକୁ ସହ୍ୟ କରିପାରେ । ତାହାଛଡ଼ା ଏହା ଆଡ଼ର୍‌କୁ କାମୁଡ଼ିଦେଇ ସଂଗେ ସଂଗେ ଜାକିଜୁକି ହୋଇ ନିଜ ଶରୀରକୁ ଏକ ପିଣ୍ଡୁଳାଭଳି କରିଦିଏ । ତା'ର ଶରୀରରୁ ବାହାରିଥିବା କଣ୍ଟାଭଳି ଅଂଶରେ ଯେତେ ଚୋଟ ମାରିଲେ ବି ତାହା ଝିଙ୍କର କୌଣସି କ୍ଷତି କରିପାରେ ନାହିଁ । ତେଣୁ ଝିଙ୍କ ବାରମ୍ବାର ଆଡ଼ର୍‌କୁ କାମୁଡ଼ି ବାରମ୍ବାର ପିଣ୍ଡୁଳାଭଳି ହୋଇ ନିଜକୁ ରକ୍ଷା କରିଥାଏ ।

ଏହିପରି ଭାବରେ ଆଡ଼ର୍‌କୁ ମାରିଦେଇ ସାରି ଝିଙ୍କ.ଆଡ଼ର୍‌କୁ ଆହାର କରିଥାଏ ।

## ପଫ୍ ଆଡ଼ର :

ଅପରପକ୍ଷରେ ପଫ୍ ଆଡ଼ର୍ ଜାତିର ସାପ ମୁଖ୍ୟତଃ ଆଫ୍ରିକା ମହାଦେଶରେ ଦେଖାଯାଇଥାଏ । ସେଠାରେ ବିଭିନ୍ନ ଆଠଜାତିର ପଫ୍ ଆଡ଼ର୍ ଦେଖାଯାଇଥାନ୍ତି । ଏକ ଜାତିର ପଫ୍ ଆଡ଼ର୍‌ର ମୁଣ୍ଡରେ ଛୋଟ ଗାତଟିଏ ରହିଥିଲାବେଳେ ଅନ୍ୟ ଏକ ଜାତିର ପଫ୍ ଆଡ଼ର୍‌ର ମୁଣ୍ଡରେ ରହିଥାଏ ଶିଙ୍ଗଭଳି ଏକ ଅଂଶ । ଜାତିଭେଦରେ କେଉଁ ପଫ୍ ଆଡ଼ର୍ ଆଫ୍ରିକାର ଜଙ୍ଗଲରେ ରହେ ତ ଅନ୍ୟ କେଉଁ ଜାତିର ପଫ୍ ଆଡ଼ର ରହେ ଆଫ୍ରିକାର ମରୁଭୂମିରେ । ସେମାନଙ୍କ ରଂଗ ପରିବେଶ ସହ ଖାପ ଖୁଆଇଲାଭଳି ହୋଇଥାଏ । ମାଟିଆ, ହଳଦିଆ, ବାଇଗଣିଆ, ଶାଗୁଆ, ନେଳିଆ ଏହିଭଳି ବିଭିନ୍ନ ରଂଗର ପଫ୍ ଆଡ଼ର୍ ଦେଖିବାକୁ ମିଳିଥାଏ । ସେମାନେ ସାଧାରଣତଃ ଭୂମି ଉପରେ ରହୁଥିଲେ ମଧ କେତେ ଜାତିର ପଫ୍ ଆଡ଼ର୍ ବଣବୁଦା ଭିତରେ ଆଶ୍ରୟ ନେଇଥାନ୍ତି । ଏକ ପ୍ରକାର ଆଡର୍‌ର ବିଷଦାନ୍ତ ପୃଥିବୀର ସମସ୍ତ ବିଷଧର ସାପମାନଙ୍କର ବିଷଦାନ୍ତଠାରୁ ବଡ଼ । ପଫ୍ ଆଡ଼ର୍‌ର ମୁଣ୍ଡ ବେଶ୍ ଓସାରିଆ । ମୁଣ୍ଡପାଖରେ ଥାଏ ବିଷଥଳି । ମାମ୍ବା ଓ ଗୋଖର ସାପର ବିଷଭଳି ପଫ୍ ଆଡ଼ର୍‌ର ବିଷ ମଧ୍ୟ ଖୁବ୍ ମାରାତ୍ମକ । କିନ୍ତୁ ଶିକାର କରିବା ଓ ନିଜକୁ ରକ୍ଷା କରିବା ଉଦ୍ଦେଶ୍ୟରେ ହିଁ ସେମାନେ ଆଘାତ କରିଥାନ୍ତି । ପଫ୍ ଆଡ଼ର୍‌ଠାରୁ ଥରକୁ ପ୍ରାୟ ୧୫ ଠୋପା ପର୍ଯ୍ୟନ୍ତ ବିଷ ବାହାରିଥାଏ ଓ ମାତ୍ର ଚାରିଠୋପା ବିଷ ଗୋଟିଏ ମଣିଷକୁ ମାରିଦେବା ପାଇଁ ଯଥେଷ୍ଟ । କିନ୍ତୁ ଚୋଟ ବସାଇବା ପୂର୍ବରୁ ପଫ୍ ଆଡ଼ର୍ ଜୋର୍‌ରେ ହିସ୍ ହିସ୍ ଶବ୍ଦ କରି ସତର୍କ କରି ଦେଇଥାଏ । ମରୁଭୂମିରେ ରହୁଥିବା ପଫ୍ ଆଡ଼ର ତା'ର ଆଖି ଆଉ ମୁଣ୍ଡ ଛଡ଼ା ଶରୀରର ଅବଶିଷ୍ଟାଂଶକୁ ବାଲି ଭିତରେ ପୋତି ରଖିଥାଏ । ତେଣୁ ଝିଟିପିଟିମାନେ ତାହା ଜାଣି ନପାରି ଆଡ଼ର୍‌ର ପାଖକୁ ଆସିଗଲେ

ଆଡ଼ର ସେମାନଙ୍କୁ ଗିଳିଦିଏ । ଆଉ ଏକ ଜାତିର ପଫ୍ ଆଡ଼ର୍ ବାଲିରେ ପଡ଼ିରହି ନିଜର ଲାଞ୍ଜକୁ ଏପଟ ସେପଟ କରି ହଲାଉଥାନ୍ତି । ହଲୁଥିବା ଲାଞ୍ଜକୁ ଦେଖି କୌଣସି ପ୍ରାଣୀ ନିକଟକୁ ଆସିଗଲେ ଆଡ଼ର୍ ତାକୁ ଧରିନିଏ ।

ବିଭିନ୍ନ ଜାତିର ପଫ୍ ଆଡ଼ର୍ ଭିନ୍ନ ଭିନ୍ନ ପ୍ରକାର ଖାଦ୍ୟ ପସନ୍ଦ କରିଥିବାର ଦେଖାଯାଇଥାଏ । ପଫ୍ ଆଡ଼ର୍ ମୁଖ୍ୟତଃ ବେଙ୍ଗ, ମୂଷା, ଝିଟିପିଟି, ଚଢ଼େଇ, ଇତ୍ୟାଦିଙ୍କୁ ଶିକାର କରି ଖାଏ । ଏକ ଜାତିର ପଫ୍ ଆଡ଼ର୍ ଅନ୍ୟ ସାପମାନଙ୍କୁ ମଧ୍ୟ ଧରି ଖାଇଥାଏ । ତେବେ ବେଙ୍ଗ ଭଳି ଛୋଟ ଛୋଟ ଜୀବମାନଙ୍କ ଦେହରେ ବିଷଦାନ୍ତ ନ ଗଳେଇ ପଫ୍ ଆଡ଼ର୍ ସେମାନଙ୍କୁ ସିଧାସଳଖ ଗିଳିଦିଏ । ବଡ଼ ବଡ଼ ଶିକାର ଦେହରେ ପଫ ଆଡ଼ର ପ୍ରଥମେ ଚୋଟ ମାରେ । ଫଳରେ ଆଡ଼ର୍‌ର ବିଷ ଶିକାର ଦେହରେ ପ୍ରବେଶ କରିଥାଏ । ବିଷଜ୍ୱାଳାରେ ପୀଡ଼ିତ ପ୍ରାଣୀ ଜୀବନ ବିକଳରେ ପଳାଇଗଲେ ସେ ତା'ର ପିଛାକରି ତା'କୁ ଧରିନେଇ ଆହାର କରିଥାଏ । ଗିଳିବାବେଳେ ଶିକାରଟି ଆଡ଼ର୍‌ର ତଣ୍ଟିପାଖରେ ପହଞ୍ଚିଗଲେ ମାଂସପେଶୀର କ୍ରିୟାଦ୍ୱାରା ତାହା ଆପେ ଆପେ ପେଟ ଭିତରକୁ ଚାଲିଯାଏ ।

ପଫ୍ ଆଡ଼ର୍ କ୍ଷେତ୍ରରେ ଏକ ବିଚିତ୍ର ପ୍ରକ୍ରିୟା ପରିଲକ୍ଷିତ ହୋଇଥାଏ । ଜନ୍ମ ହୋଇପଡ଼ିବା ସାଂଗେ ସାଂଗେ ପଫ୍ ଆଡ଼ର୍‌ର ଛୁଆ ଭୋକ ସମ୍ଭାଳି ନପାରି ଛୋଟ ଛୋଟ ମୂଷାମାନଙ୍କୁ ଧରି ଖାଇଦିଏ । ତଥାପି ପଫ୍ ଆଡ଼ର୍‌ର ଛୁଆ ଅନ୍ତତଃ ତିନିମାସ ପର୍ଯ୍ୟନ୍ତ ପୂରାପୂରି ଅଖିଆ ରହିପାରେ । ପଫ୍ ଆଡ଼ର୍ ଛୁଆର ଏହି କ୍ଷୀଣ ଉପବାସ କାଳରେ ତା'ର ଶରୀର କ୍ଷୀଣ ହେବା ପରିବର୍ତ୍ତେ ବରଂ ବଢ଼ିବାରେ ଲାଗିଥାଏ । ସେ ଲମ୍ବରେ ବଢ଼େ । ମୋଟାସୋଟା ବି ହୋଇଯାଏ । ଉପାସିଆ ଅବସ୍ଥାରେ ରହିଥିଲେ ମଧ ପଫ୍ ଆଡ଼ର୍‌ର ଶରୀର କିପରି ବୃଦ୍ଧିପାଏ, ତା'ର କାରଣ ଏପର୍ଯ୍ୟନ୍ତ ଜଣାପଡ଼ିନାହିଁ ।



## ପୃଥିବୀର ସବୁଠାରୁ ଅଧିକ ଦ୍ରୁତଗାମୀ ସାପ –

# ମାମ୍ବା

ପୃଥିବୀର ସବୁଠାରୁ ଅଧିକ ବେଗରେ ଗତି କରିପାରୁଥିବା ସ୍ଥଳଚର ସାପ ହେଉଛି କଳା ମାମ୍ବା । ମାମ୍ବାର ନାଁ ଶୁଣିଲେ ବି ଭୟରେ ଲୋମ ଟାଙ୍କୁରି ଉଠେ । ତା'ର ଚୋଟ କୁଆଡ଼େ ବ୍ୟର୍ଥ ଯାଏନି । ଦ୍ରୁତ ଗତିରେ ଚାଲି ଯାଉଥିବା ସମୟରେ ମଧ୍ୟ ଏହା ଯେ କୌଣସି ଦିଗକୁ ଆକ୍ରମଣ କରିପାରେ । ଭୂମି ଉପରୁ ମୁଣ୍ଡକୁ ଟେକି, ପାଟି ମେଲେଇ, ଜିଭ ଲହ ଲହ କରି ଓ ହିସ୍ ହିସ୍ ଶବ୍ଦ କରି ଆଗକୁ ଆଗଭୁ ମାଡ଼ି ଯାଉଥିବା କଳା ମାମ୍ବାକୁ ଦେଖିଲେ ଲୋକ ଡରରେ ଛାନିଆ ହୋଇଯାଏ । ଚୋଟ ବସାଇବା ପୂର୍ବରୁ ମାମ୍ବା ତା'ର ଲାଞ୍ଜରେ ଠିଆ ହୋଇଯାଏ ବୋଲି କହିଲେ କିଛି ଭୁଲ୍ ହେବନାହିଁ । କାରଣ ଏହା ନିଜ ଶରୀର ଲମ୍ବର ପ୍ରାୟ ଦୁଇ ତୃତୀୟାଂଶ ଭୂମି ଉପରକୁ ଉଠାଇ ନେଇ ଚୋଟ ମାରିପାରେ ।

ମାମ୍ବା କେତେ ବେଗରେ ଗତିକରିପାରେ ସେ ବିଷୟରେ ଭିନ୍ନ ଭିନ୍ନ ମତ ପ୍ରକାଶ ପାଇଛି । ପଥ ଆବଡ଼ା ଖାବଡ଼ା ହୋଇନଥିଲେ ଘଣ୍ଟାକୁ ଷୋହଳ, ବତିଶ ଓ ଏପରକି ଅଠଚାଳିଶ କିଲୋମିଟର ବେଗରେ ସେ କୁଆଡ଼େ ଗତି କରିପାରେ । ଗଡ଼ାଣିଆ ରାସ୍ତାରେ ଏହାର ବେଗ ଆହୁରି ଦ୍ରୁତତର ହୋଇଯାଏ । ତେବେ କେହି କେହି ଯୁକ୍ତି କରନ୍ତି ଯେ ମାମ୍ବାର ଶରୀରରେ ଶୀତଳ ରକ୍ତ ପ୍ରବାହିତ ହେଉଥିବାରୁ ଓ ରକ୍ତର ପରିମାଣ ଅପେକ୍ଷାକୃତ କମ୍ ହୋଇଥିବାରୁ ସେ ଏତେ ଅଧିକ ବେଗରେ ହୁଏତ ଗତି କରିପାରିବ ନାହିଁ । ସେ ଯାହାହେଉ, ସାଧାରଣ ଭାବରେ ଘଣ୍ଟାକୁ ପ୍ରାୟ ଏଗାର କିଲୋମିଟର ବେଗରେ ଓ ମଝିରେ ମଝିରେ ଘଣ୍ଟାକୁ ପାଖାପାଖି ପଚିଶ କିଲୋମିଟର ବେଗରେ ଗତି କରିବା ପାଇଁ ମାମ୍ବା ସମର୍ଥ । ତେବେ ମସୃଣ ଭୂମି ଅପେକ୍ଷା ଆବଡ଼ା ଖାବଡ଼ା ରାସ୍ତାରେ ଗତି କରିବା ତାହା ପାଇଁ ବେଶୀ ସହଜଦାୟକ ।

**ଚାଲିଚଲନ :**

ମାମ୍ବା ମୁଖ୍ୟତଃ ଆଫ୍ରିକାର ଅଧିବାସୀ । ତା'ର ବିଷର ଉଗ୍ରତା ଓ ଚଞ୍ଚଳ ଗତି ଯୋଗୁଁ ତା'ର ନାଁ ଶୁଣିଲେ ସେଠାକାର ଲୋକେ ଛାନିଆ ହୋଇଯାଆନ୍ତି । କହିବାକୁ ଗଲେ ପୃଥିବୀର ଅତି ଭୟଙ୍କର ସାପମାନଙ୍କ ମଧ୍ୟରେ ମାମ୍ବା ସ୍ଥାନ ପାଉଛି ।

କଳାମାମ୍ବା ବୋଲି କୁହାଯାଉଥିବା ମାମ୍ବା ପ୍ରକୃତରେ କଳା ନୁହେଁ । ଏହାର ରଙ୍ଗ ଗାଢ଼ ବାଦାମୀ । କଳାମାମ୍ବା ସାଧାରଣତଃ ୮ ରୁ ୯ ଫୁଟ ପର୍ଯ୍ୟନ୍ତ ଲମ୍ବା ହୋଇପାରେ ।

ଗୋଟିଏ ଗୋଟିଏ କଳାମାମ୍ବାର ଲମ୍ବ ୧୪ ଫୁଟ ପାଖାପାଖିରେ ପହଞ୍ଚିଥାଏ । କିନ୍ତୁ ଶାଗୁଆ ରଂଗର ମାମ୍ବା କଳାମାମ୍ବା ତୁଳନାରେ ଛୋଟ ଓ ତା'ର ଲମ୍ବ କେବେହେଲେ ନଅଫୁଟରୁ ଅଧିକ ନୁହେଁ । ତାହାଛଡ଼ା ଏହା ଅପେକ୍ଷାକୃତ ଏକ ଶାନ୍ତ ସ୍ୱଭାବର ସାପ । କଳା ମାମ୍ବାର ବିଷ ତୁଳନାରେ ଶାଗୁଆ ମାମ୍ବାର ବିଷ ଖୁବ୍ କମ୍ କ୍ଷତି କରିଥାଏ ।

କଳାମାମ୍ବା ଭୂମି ଉପରେ ବାସ କରେ । ସାଧାରଣତଃ ଖାଲୁଆ ଜାଗା, ପଥର ଖୋଲ କିମ୍ବା ତଳେ ପଡ଼ିଥିବା ଗଛ ଗଣ୍ଡିର ଫାଙ୍କ ତା'ର ବାସସ୍ଥାନ । ଉଇହୁଙ୍କା ଭିତରେ ମଧ୍ୟ ତାକୁ ଦେଖିବାକୁ ମିଳେ । ଖାଦ୍ୟ ଖୋଜିବା ତଥା ସାଥୀ ଖୋଜିବା ନିମନ୍ତେ ମାମ୍ବା ବହୁଆଡ଼ ବୁଲାବୁଲି କରୁଥିଲେ ମଧ୍ୟ ବିଶ୍ରାମ ନେବାପାଇଁ ସେ ନିଜ ବସାକୁ ବାହୁଡ଼ି ଆସିଥାଏ । ରାଗିଗଲେ ସେ ଖୁବ୍ ଦ୍ରୁତ ଗତିରେ ଘରମୁହାଁ ହୋଇ ଛୁଟି ଚାଲେ ଓ ବାଟରେ ଯିଏ ହାବୁଡ଼େ ପଡ଼େ ତାହା ଉପରେ ଚୋଟ ବସାଇ ଦିଏ ।



ମାମ୍ବା

କଳାମାମ୍ବା ସାଧାରଣତଃ ଛୋଟ ଛୋଟ ଗଛରେ ଚଢୁଥିଲେ ବି ପଥର ମୁଣ୍ଡିଆ ଉପରେ ଚଢ଼ି ଖରା ପୁଆଇବା ତା'ର ପସନ୍ଦ; କିନ୍ତୁ ଶାଗୁଆ ମାମ୍ବା ପ୍ରାୟତଃ ବୃକ୍ଷବାସୀ । ତେଣୁ ଜଙ୍ଗଲ ବାହାରେ ସେମାନଙ୍କୁ ଦେଖିବାକୁ ମିଳେନାହିଁ । ତାହାଛଡ଼ା ଶାଗୁଆ ମାମ୍ବା କଳାମାମ୍ବା ଭଳି ଏତେ ସନ୍ଦେହୀ ନୁହେଁ କି ଛାନିଆ ପ୍ରକୃତିର ନୁହେଁ ।

## ଖାଦ୍ୟ :

କଳାମାମ୍ବା ମୁଖ୍ୟତଃ ଚଢ଼େଇ, ଛୋଟ ଜୀବଜନ୍ତୁ ଓ ମୂଷାମାନଙ୍କୁ ଧରି ଖାଇଥାଏ । ବେଳେବେଳେ ଶିକାର କରିସାରି ଶିକାରକୁ ଜିଭମାରି ପରୀକ୍ଷା କରେ ଓ ପରେ ଏହାକୁ ଗିଳିଦିଏ । ଚଢ଼େଇ ଅଣ୍ଡା, ଚଢ଼େଇ, ଏଣ୍ଡୁଅ ଓ ଗଛରେ ରହୁଥିବା ଝିଟିପିଟି ଇତ୍ୟାଦି ଶାଗୁଆ ମାମ୍ବାର ମୁଖ୍ୟ ଖାଦ୍ୟ ।

## ପ୍ରଜନନ :

କଳା ଓ ଶାଗୁଆ ଉଭୟ ଜାତିର ମାମ୍ବା ଅଣ୍ଡା ଦେଇଥାନ୍ତି । ଶାଗୁଆ ମାମ୍ବାର ଅଣ୍ଡା କଳାମାମ୍ବାର ଅଣ୍ଡା ଅପେକ୍ଷା ସାମାନ୍ୟ ଛୋଟ । ସାଧାରଣତଃ ବସନ୍ତ ଋତୁ ଓ ଗ୍ରୀଷ୍ମ ଋତୁର ପ୍ରାରମ୍ଭ ସେମାନଙ୍କର ପ୍ରଜନନ ସମୟ । ମାଈ କଳାମାମ୍ବା ଥରକେ ୯ରୁ ୧୪ଟି ପର୍ଯ୍ୟନ୍ତ ଅଣ୍ଡା ଦିଏ । ପ୍ରତ୍ୟେକ ଅଣ୍ଡାର ଲମ୍ବ ପ୍ରାୟ ତିନିଇଂଚ । ଅଣ୍ଡା ଫୁଟିଲେ ସେଥିରୁ ୧୫ରୁ ୨୪ ଇଞ୍ଚ ଲମ୍ବର ଛୁଆ ବାହାରି ଆସେ । ସଦ୍ୟଜାତ ମାମ୍ବାଛୁଆ ମଧ୍ୟ ମୂଷାମାନଙ୍କୁ ଧରି ଖାଇଥାଏ । ମାମ୍ବା ଛୁଆ ଖୁବ୍ ଦ୍ରୁତ ଗତିରେ ବୃଦ୍ଧିଲାଭ କରେ ଓ ମାତ୍ର ବର୍ଷକ ଭିତରେ ଏହାର ଲମ୍ବ ପାଖାପାଖି ଛଅଫୁଟରେ ପହଞ୍ଚିଯାଏ । କଳାମାମ୍ବାର ଛୁଆ ପ୍ରଥମାବସ୍ଥାରେ ଶାଗୁଆସିଆ ଦେଖାଯାଉଥିଲେ ମଧ୍ୟ ପରେ ଏହା ଗାଢ଼ ବାଦାମୀରଂଗ ଧାରଣ କରେ । ଶାଗୁଆ ମାମ୍ବା ଛୁଆର ରଙ୍ଗ ସାଧାରଣତଃ ନେଳିଆ । ପରେ ଏହାର ରଂଗ ହୋଇଯାଏ ଗାଢ଼ ସବୁଜ ।

କହିବାକୁ ଗଲେ ବୟସ୍କ ମାମ୍ବାର କେହି ଶତ୍ରୁ ନାହାନ୍ତି । ନେଉଳ, ଇଗଲ ଇତ୍ୟାଦି କେବଳ ମାମ୍ବାର ଛୁଆଙ୍କୁ ହିଁ ମାରିପାରନ୍ତି । ଦକ୍ଷିଣ ଆଫ୍ରିକାର ସର୍ପ ବିଶେଷଜ୍ଞ ପି.ଡବଲିଉ. ଉଇଲ୍‌ସଙ୍କ ମତରେ ମାମ୍ବା ଶିକାର ଶରୀରର ଅପେକ୍ଷାକୃତ କମ୍ ଲୋମଥିବା ନରମ ଅଂଶରେ ହିଁ ଚୋଟ ମାରିଥାଏ । କାନର ପଛପଟ, ଗାଲର ଆଖିତଳକୁ ଥିବା ଅଂଶ ଏବଂ କାଖରେ ହିଁ ମାମ୍ବା ଅଧିକାଂଶ ସମୟରେ ଚୋଟ ମାରୁଥିବାର ଦେଖାଯାଏ । ମୁହଁକୁ ଛାଡ଼ିଦେଲେ ନେଉଳର ଦେହସାରା ଲୋମ ଭର୍ତ୍ତି ହୋଇଥିବାରୁ ନେଉଳ ମାମ୍ବା ସାପର କବଳରୁ ରକ୍ଷା ପାଇଯାଏ । ମାମ୍ବାର ଚୋଟ ଖାଇଲା ପରେ ପରେ ବିଷର ପ୍ରଭାବରୁ ଶିକାରର ରଂଗ ପରିବର୍ତ୍ତିତ ହୋଇ ଶିକାରଠାରେ ପଚନ ପ୍ରକ୍ରିୟା ଆରମ୍ଭ ହୋଇଯାଏ । ଏହି ପ୍ରାକ୍ ପଚନ ପ୍ରକ୍ରିୟା ମଧ୍ୟ ଶିକାରକୁ ଜୀର୍ଣ୍ଣ କରିବାରେ ସାହାଯ୍ୟ କରେ ।

ଆଫ୍ରିକାର ଅଧିବାସୀମାନେ ବିଶ୍ୱାସ କରନ୍ତି ଯେ ଶାଗୁଆ ମାମ୍ବା ରାସ୍ତା ପାଖରେ ଥିବା ଗଛର ଶାଗୁଆ ରଂଗସହ ମିଶିଯାଇ ଗଛରେ ଓହଳି କରି ରହିଥାଏ । ସେହି ବାଟ

ଦେଇ କେହି ଯାଉଥିଲେ ସେ ତା'ର ଶିକାର ହୋଇଯାଏ । କେହି କେହି କହନ୍ତି ଯେ ଶାଗୁଆ ମାମ୍ୱା କୁଆଡ଼େ ଏକ ବିଚିତ୍ର ଶବ୍ଦ କରି ପଥିକ ମାନଙ୍କୁ ତାଙ୍କ ଆଡ଼କୁ ଆକର୍ଷିତ କରାଇଥାଏ । ପଥିକଟି ଉକ୍ତ ଶବ୍ଦରେ ଭଳିଯାଇ ପଥହୁଡ଼ି ଶବ୍ଦ ଆସୁଥିବା ସ୍ଥାନରେ ପହଂଚିଗଲେ ମାମ୍ୱା ତା'ର ତଣ୍ଟିରେ ଚୋଟ ବସାଇଦିଏ । ଫଳରେ ପଥିକଟି ସେଠାରେ ପଡ଼ି ତତ୍‌କ୍ଷଣାତ୍ ମରିଯାଏ । ଏଭଳି ତଥ୍ୟ ଆଦୌ ବିଶ୍ୱାସଯୋଗ୍ୟ ନୁହେଁ ବୋଲି ଅଧିକାଂଶଙ୍କର ମତ । କାରଣ ଶାଗୁଆ ମାମ୍ୱା ସାଧାରଣତଃ ଲାଜକୁଳା । ନିଜପ୍ରତି ବିପଦ ନ ପଡ଼ିଲେ ସେ ପ୍ରାୟତଃ ଆକ୍ରମଣ କରେ ନାହିଁ । ତେଣୁ ବହୁ ସମୟରେ ଶାଗୁଆ ମାମ୍ୱାକୁ ଶାଗୁଆ ରଂଗର ଅନ୍ୟ ବୃକ୍ଷବାସୀ ବିଷହୀନ ସାପ ଭାବି ଲୋକେ ତା'କୁ ହେୟଜ୍ଞାନ କରିଥାନ୍ତି ସିନା, କିନ୍ତୁ ଶାଗୁଆ ମାମ୍ୱାର ଶାନ୍ତ ସ୍ୱଭାବ ଯୋଗୁଁ ସେମାନେ ତା'ରି ଚୋଟରୁ ବର୍ତ୍ତିଯାଆନ୍ତି ।



## ପୃଥିବୀର ସବୁଠାରୁ ଓଜନିଆ ବିଷଧର ସାପ –

# ରାଟ୍ଲ୍ ସ୍ନେକ୍

ଏକ ଜାତିର ରାଟ୍‌ଲସ୍ନେକ୍ ପୃଥିବୀର ସବୁଠାରୁ ଓଜନିଆ ବିଷଧର ସାପରୂପେ ଗିନିସ୍ ବୁକ୍ ଅଫ୍ ରେକର୍ଡ଼ସ୍‌ରେ ସ୍ଥାନ ପାଇଛି । ଆମେରିକାର ଦକ୍ଷିଣପୂର୍ବ ଅଞ୍ଚଳରେ ଧରାପଡ଼ିଥିବା ଉକ୍ତ ସାପର ଲମ୍ବଥିଲା ସାତ ଫୁଟ ନଅଇଂଚ୍ ଓ ତାର ଓଜନ ଥିଲା ୩୪ ପାଉଣ୍ଡ ।

**ଶରୀରର ବର୍ଣ୍ଣନା ଓ ବାସସ୍ଥାନ :**

ରାଟଲ୍ ସ୍ନେକର ଶରୀର ବେଶ୍ ବଳିଷ୍ଠ । ଏହାର ଲାଞ୍ଜପାଖରେ ଶଙ୍ଖ ଭଳି ଏକ ଅଂଶ ବାହାରିଥାଏ । ଉକ୍ତ ଅଂଶକୁ କୁହାଯାଏ ରାଟ୍‌ଲ୍ । ଲାଞ୍ଜକୁ ଥରାଇଲେ ଏହି ଶଙ୍ଖଭଳି ଅଂଶଟି ଏକ ପ୍ରକାରର ଶବ୍ଦ କରିଥାଏ । ରାଟ୍‌ଲ୍ ସ୍ନେକ୍ ପ୍ରାୟତଃ ଉତ୍ତର ଆମେରିକାରେ ହିଁ ଦେଖାଯାଇଥାଏ । କାନାଡ଼ାର ଦକ୍ଷିଣ ଭାଗରୁ ଆରମ୍ଭକରି ମେକ୍‌ସିକୋ ପର୍ଯ୍ୟନ୍ତ ଅଞ୍ଚଳରେ ୨୯ ଜାତିର ରାଟ୍‌ଲ୍‌ସ୍ନେକ୍ ଦେଖିବାକୁ ମିଳେ । ଏହି ୨୯ ଜାତି ଭିତରେ ରହିଛନ୍ତି ୬୦ ବା ତଦୂର୍ଦ୍ଧ୍ୱ ଉପଜାତି । ଏକ ଜାତିର ରାଟ୍‌ଲ୍‌ସ୍ନେକ୍ ସାଧାରଣତଃ ଦୁଇଫୁଟରୁ ଅଧିକା ଲମ୍ବ ହୁଅନ୍ତି ନାହିଁ । କିନ୍ତୁ ଆଉ ଏକ ଜାତିର ରାଟ୍‌ଲ ସ୍ନେକ୍ ବଢ଼ି ପାଖାପାଖି ଆଠଫୁଟରେ ପହଞ୍ଚିଯାଏ । ଜାତିଭେଦରେ ରାଟଲ୍‌ସ୍ନେକ୍‌ର ପିଠିରେ ଠିକିରି ଆକାରର କି ଆୟତାକାର ଦାଗ ଦେଖିବାକୁ ମିଳେ ।

ରାଟ୍‌ଲ୍‌ସ୍ନେକ୍‌ର ରାଟଲ୍ ଛନ୍ଦାଛନ୍ଦି ହୋଇ ରହିଥିବା କେତେକ ଖୋଳପାଦ୍ୱାରା ଗଠିତ । ସାପର ଲାଞ୍ଜରୁ ବାହାରୁଥିବା କାତିରୁ ହିଁ ସେହି ଖୋଳପା ବାହାରିଥାଏ । ରାଟ୍‌ଲ୍‌ସ୍ନେକ୍ କାତି ଛାଡ଼ିଲାବେଳେ ଲାଞ୍ଜ ଅଂଶରୁ ସବୁଯାକ ପୁରୁଣାକାତି ବାହାରି ନଯାଇ କେତେକ କାତି ନୂଆକାତି ସହ ଲାଖି ରହିଯାଏ । ଏହିଭଳି ଭାବରେ ପ୍ରତିଥର କାତିଛାଡ଼ିଲାବେଳକୁ ପୁରୁଣାକାତି ଉପରକୁ ଉପର ଜମିରହି 'ରାଟ୍‌ଲ' ଗଠନ କରିଥାଏ । ତେବେ ରାଟ୍‌ଲ୍‌ଟି ଅନିୟନ୍ତ୍ରିତ ଭାବରେ ଲମ୍ବି ଲମ୍ବି ଯାଏ ନାହିଁ । ରାଟ୍‌ଲ୍‌ଟି ବଢ଼ି ଚାଲିବା ସଙ୍ଗେ ରାଟ୍‌ଲର ଅଗ୍ରଭାଗରୁ ଖୋଳପାମାନ ମଧ୍ୟ ଛାଡ଼ି ଛାଡ଼ି ଯାଏ । ତେବେ ସାଧାରଣଭାବରେ ଦେଖିବାକୁ ଗଲେ ବଣୁଆ ରାଟଲ୍‌ସ୍ନେକ୍‌ରେ ରହିଥିବା ରାଟ୍‌ଲ୍‌ରେ ୧୪ ଟି ପର୍ଯ୍ୟନ୍ତ ଖୋଳପା ରହିଥାଏ । କିନ୍ତୁ ଚିଡ଼ିଆଖାନାରେ ରହିଥିବା ରାଟ୍‌ଲସ୍ନେକ୍ କୌଣସି କଠିନ ପଦାର୍ଥରେ ରାଟ୍‌ଲ୍‌କୁ ଘଷିବାର ସୁବିଧା ପାଉନଥିବାରୁ ତାହାଠାରେ ଥିବା ରାଟ୍‌ଲରେ ରହିଥାଏ ପାଖାପାଖି ୨୯ ଖଣ୍ଡ ଖୋଳପା । ରାଟ୍‌ଲ୍‌ରେ ରହିଥିବା

ଖୋଳପାର ସଂଖ୍ୟାକୁ ଚାହିଁ ରାଟଲରୁ ବାହାରୁଥିବା ଶବ୍ଦ ଉଣାଅଧିକ ହୋଇଥାଏ । ରାଟଲ୍‌ରେ ବେଶୀ ସଂଖ୍ୟାରେ ଖୋଳପା ରହିଥିଲେ ଶବ୍ଦ ଅଧିକ କର୍କଶ ହୋଇଥାଏ । ଉକ୍ତ ସାପର ରାଟ୍‌ଲ୍‌ରୁ ବାହାରୁଥିବା ଶବ୍ଦ ଅନ୍ତତଃ କେତେ ଫୁଟ ଦୂରରୁ ଶୁଣାଯାଇପାରେ । ସେହି ରାଟ୍‌ଲ୍ ଶବ୍ଦ ଶୁଣି ବଡ଼ ବଡ଼ ଜନ୍ତୁମାନେ ଜାଣିଆରେ ରାଟଲ୍ ସ୍ନେକ୍ ଠାରୁ ଦୂରେଇଯାଆନ୍ତି । ଫଳରେ ସେମାନେ ରାଟ୍‌ଲ୍ ସ୍ନେକ ଉପରେ ଅଜାଣତରେ ଚଢ଼ିଯାଇ ତା'ର ପ୍ରାଣ ନେଇଯିବାର ସମ୍ଭାବନା ହ୍ରାସ ପାଏ । କେତେକ ଜାତିର ରାଟଲ୍ ସ୍ନେକ୍ ସାଧାରଣତଃ ଖୁବ୍ ବଦ୍‌ରାଗୀ । ଦେଖିଲେ ଗୋଡ଼େଇ ଗୋଡ଼େଇ ଚୋଟ ମାରିବାକୁ ସେମାନେ ପଛାନ୍ତି ନାହିଁ । ତେବେ ଅନ୍ୟଏକ ଜାତିର ରାଟ୍‌ଲ୍ ସ୍ନେକ୍‌କୁ ବିରକ୍ତ ନକଲେ ସେ ପ୍ରାୟତଃ କାମୁଡ଼େ ନାହିଁ । ଏପରକି ତାକୁ ହାତରେ ଧରିଲେ ମଧ୍ୟ ସେ ଚୋଟ ମାରେନାହିଁ । ରାଟଲ୍ ଦ୍ୱାରା ଶବ୍ଦ କରି ମଧ୍ୟ ଡରାଏ ନାହିଁ ସେ ।



ରାଟ୍‌ଲ ସ୍ନେକ୍

ଅଳ୍ପ ବୟସ୍କ ରାଟ୍‌ଲ୍ ସ୍ନେକ୍ ଠାରେ ବିଷର ପରିମାଣ ଖୁବ୍ କମ୍ । ବିଷ ଥଳି ଖାଲି ହୋଇଗଲେ ତା'କୁ ପୁଣି ବିଷରେ ପୂର୍ଣ୍ଣକରିବା ପାଇଁ ରାଟ୍‌ଲ୍ ସ୍ନେକ୍‌କୁ ପାଖାପାଖି ଦୁଇମାସ ସମୟ ଲାଗିଥାଏ । ବଡ଼ ଆଶ୍ଚର୍ଯ୍ୟର କଥା ଯେ ବିଭିନ୍ନ ଅଞ୍ଚଳରେ ଦେଖାଯାଉଥିବା କୌଣସି ଏକ ନିର୍ଦ୍ଦିଷ୍ଟ ଜାତିର ରାଟ୍‌ଲ୍ ସ୍ନେକ୍‌ର ବିଷର ଉଗ୍ରତା ସମାନ ନଥାଏ ।

## ଖାଦ୍ୟପେୟ :

ରାଟ୍‌ଲ୍ ସ୍ନେକ୍ ବେଙ୍ଗ, ମୂଷା, ଝିଟିପିଟି, ଏଣ୍ଡୁଅ ଓ ଠେକୁଆ ଆଦି ପ୍ରାଣୀକୁ ଶିକାର କରିଥାଏ । ରାଟ୍‌ଲ୍ ସ୍ନେକ୍ ଅନ୍ୟ ସାପମାନଙ୍କ ଭଳି ଅଳ୍ପ ପରିମାଣର ପାଣି ପିଏ । ରାଟ୍‌ଲ୍ ସ୍ନେକ୍ ଶରୀରରୁ ବାହାରି ଯାଉଥିବା ଜଳର ପରିମାଣ ମଧ୍ୟ ଖୁବ୍ କମ୍ । ରାଟ୍‌ଲ୍ ସ୍ନେକ୍ କୁକୁର ଭଳି ଚାକୁ ଚାକୁ କରି ପାଣି ପିଏ । ସେ କାକର ଚାଟି ଖାଇଥାଏ ବୋଲି ଯାହା କୁହାଯାଏ, ତାହା ଠିକ୍ ନୁହେଁ । ବରଂ ସେ ପାଣି ଶୋଷିକରି ପିଇବା ପ୍ରମାଣିତ ହୋଇଛି ।

## ପ୍ରଜନନ :

ମାଈ ରାଟ୍‌ଲ୍ ସ୍ନେକ୍ ଅଣ୍ଡାଦେବା ପରିବର୍ତ୍ତେ ଛୁଆଜନ୍ମ କରିଥାଏ । ମାଈ ରାଟ୍‌ଲ୍ ସ୍ନେକ୍‌ର ଆକାରକୁ ଚାହିଁ ସେମାନେ ଥରକୁ ୧ରୁ ୬୦ଟି ପର୍ଯ୍ୟନ୍ତ ଛୁଆ ଜନ୍ମ ଦେଇଥାନ୍ତି । ତେବେ ସାଧାରଣ ଭାବରେ ଦେଖିବାକୁଗଲେ ପ୍ରତି ମାଈ ରାଟ୍‌ଲ୍ ସ୍ନେକ୍ ଠାରୁ ଥରକୁ ୧୦ ରୁ ୨୦ଟି ପର୍ଯ୍ୟନ୍ତ ଛୁଆ ବାହାରିଥାଏ । ଜଳବାୟୁର ପରିବର୍ତ୍ତନକୁ ଚାହିଁ ମାଈ ରାଟ୍‌ଲ୍ ସ୍ନେକ୍ ବର୍ଷରେ ଥରେ କିମ୍ବା ଦୁଇବର୍ଷରେ ଥରେ ଛୁଆଜନ୍ମ କରିଥାଏ । ଅତ୍ୟଧିକ ଥଣ୍ଡା ପଡୁଥିବା ଆମେରିକାର ଉତ୍ତରାଞ୍ଚଳରେ ରାଟ୍‌ଲ୍ ସ୍ନେକ୍ ଦୁଇବର୍ଷରେ ଥରେ ଛୁଆଜନ୍ମ କରୁଥିବାର ଦେଖାଯାଇଥାଏ ।

ରାଟଲ୍ ସ୍ନେକ୍‌ର ଯେ ଶତ୍ରୁ ନାହାନ୍ତି, ତାହା ନୁହେଁ । ଚିଲ, ଛଞ୍ଚାଣ, ସାପଖିଆ ସାପ ଇତ୍ୟାଦି ରାଟଲ ସ୍ନେକ୍‌ର ଶତ୍ରୁ । ହରିଣ ଭଳି ଖୁରା ଥିବା ଅନ୍ୟଜନ୍ତୁମାନଙ୍କ ଗୋଡ଼ରେ ଦଳିହୋଇ ରାଟ୍‌ଲ ସ୍ନେକ୍‌ର ଛୁଆମାନେ ବହୁସଂଖ୍ୟାରେ ପ୍ରାଣ ହରାଇଥାନ୍ତି । ଅତ୍ୟଧିକ ଥଣ୍ଡା, ଅତ୍ୟଧିକ ଗରମ ତଥା ଭୋକ ଉପାସ ଆଦି ସହିନପାରି, ରାଟଲ୍ ସ୍ନେକ୍‌ର ଅନେକ ଶାବକ ମରିଯାଉଥିବାର ଦେଖାଯାଏ । ବିଶେଷକରି ଜନ୍ମ ହେବାର ପ୍ରଥମ ବର୍ଷ ଭିତରେ ସେମାନଙ୍କର ମୃତ୍ୟୁହାର ଖୁବ୍ ବେଶୀ ।

ସାପ ଏକ ଅତି ଅଦ୍ଭୁତ ପ୍ରାଣୀ, ସାପ ସବୁକିଛି ଦେଖିପାରେ, ସବୁକିଛି ଅନୁଭବ କରିପାରେ, ହେଲେ ସେ କିଛି ଶୁଣିପାରେ ନାହିଁ । ସାପକୁ କାଲ ବୋଲି ଧରିନେଲେ ହୁଏତ ଠିକ୍ ହୋଇପାରେ । କିନ୍ତୁ ଶବ୍ଦ ପ୍ରତି ସାପ ବେଶ୍ ସଂବେଦନଶୀଳ ।

ଲରେନ୍‌ସ୍ କ୍ଲବର ନାମକ ଜଣେ ଗବେଷକ ରାଟ୍‌ଲ୍‌ସ୍ନେକ୍ ଉପରେ ଏକ ଅତି କୌତୂହଳୋଦ୍ଦୀପକ ପରୀକ୍ଷା କରିଛନ୍ତି । କ୍ଲବର ପ୍ରଥମେ ଗୋଟିଏ ରାଟଲ ସ୍ନେକ୍‌କୁ ନେଇ ଏକ ଟେବୁଲ ତଳେ ରଖିଦେଲେ । ପରେ ଦୁଇଟି ବାଡ଼ିନେଇ ବାଡ଼ି ଦୁଇଟିକୁ ବାଡ଼େଇ

ଠକ୍ ଠକ୍ ଶବ୍ଦ କଲେ । ବାଡ଼ି କିମ୍ବା ତାଙ୍କର ହାତକୁ ଦେଖିପାରୁ ନଥିଲେ ମଧ୍ୟ ରାଟ୍‌ଲ ସ୍ନେକ୍‌ଠାରେ କେତେକ ପ୍ରତିକ୍ରିୟା ପ୍ରକାଶର ଲକ୍ଷଣ ଜଣାପଡ଼ିଲା । ଏହାର କାରଣ ଅନୁଧ୍ୟାନ କରିବାରୁ ଜଣା ପଡ଼ିଲା ଯେ କ୍ଲବର ବାଡ଼ି ଠକ୍ ଠକ୍ କଲାବେଳେ ଏକ ଟୁଲ୍ ଉପରେ ଗୋଡ଼ ଓହଳାଇ ବସିଥିଲେ ଓ ବାଡ଼ିକୁ ବାଡ଼ି ବାଡ଼େଇଲାବେଳେ ତାଙ୍କର ଗୋଡ଼ ଦୁଇଟି ହଲି ଯାଉଥିଲା । କ୍ଲବରଙ୍କର ଗୋଡ଼ ହଲେଇବା ଦେଖି ରାଟ୍‌ଲ୍ ସ୍ନେକ୍ ପ୍ରତିକ୍ରିୟା ପ୍ରକାଶ କରୁଥିଲା । ସାପଟି ଯେପରି ତାଙ୍କର ଗୋଡ଼କୁ ନ ଦେଖିପାରିବ ସେଥିପାଇଁ କ୍ଲବର୍ ତାଙ୍କର ଗୋଡ଼ ଓ ସାପ ଭିତରେ ଏକ ପରଦା ଓହଳାଇ ଦେଲେ । ତା ପରେ ବାଡ଼ିକୁ ବାଡ଼ି ବାଡ଼େଇଲା ମାତ୍ରେ ରାଟଲ୍ ସ୍ନେକଠାରେ ମଧ୍ୟ ପ୍ରତିକ୍ରିୟା ପ୍ରକାଶ ପାଇଲା । କ୍ଲବରଙ୍କର ଗୋଡ଼ର ପ୍ରତିବିମ୍ବକୁ ନିକଟରେ ଥିବା ଏକ ଝରକା ବାଟରେ ଦେଖି ରାଟ୍‌ଲ୍ ସ୍ନେକ୍ ଏଭଳି ପ୍ରତିକ୍ରିୟା ପ୍ରଦର୍ଶନ କରୁଛି ବୋଲି ଜଣା ପଡ଼ିଲା । ପନ୍ଦର ଫୁଟ ଦୂରରୁ କଂକ୍ରିଟ୍ ଚଟାଣ ଉପରେ ପାଦ ଶବ୍ଦକୁ ମଧ୍ୟ ସେହି ସାପଟି ବାରିପାରିଲା । ସାପଟିକୁ ଗୋଟିଏ ମୋଟା କମ୍ବଳ ଉପରେ ରଖି ଦେଲେବି ପାଦଶବ୍ଦକୁ ବାରିବାରେ ରାଟଲ୍ ସ୍ନେକଟି କିଛି ଭୁଲ୍ କଲା ନାହିଁ । ତା' ପରେ କ୍ଲବର ସାପଟିକୁ ଏକ କାର୍ଡ଼ବୋର୍ଡ଼ ବାକ୍ସରେ ରଖି ବାକ୍ସଟିକୁ ଏକ ରବର ପଟି ସାହାଯ୍ୟରେ ଓହଳାଇ ଦେଲେ । ରବର ପଟିଟି ବନ୍ଧା ହୋଇଥିଲା ଏକ ବାଡ଼ିରେ । ଚଟାଣର କମ୍ପନ ଯେପରି ବାଡ଼ି ଦ୍ୱାରା ପ୍ରବାହିତ ନ ହେବ ସେଥିପାଇଁ ବାଡ଼ିର ଦୁଇମୁଣ୍ଡକୁ ଦୁଇଟି ତକିଆ ଉପରେ ରଖିଦିଆଗଲା । ତଥାପି ମଧ ସାପଟି ବାଡ଼ିକୁ ବାଡ଼ିରେ ବାଡ଼େଇବାର ଶବ୍ଦ ବାରି ପ୍ରତିକ୍ରିୟା ପ୍ରକାଶ କଲା । ଏପରିକି ରେଡ଼ିଓରୁ ବାହାରୁଥିବା ଶବ୍ଦ ମଧ୍ୟ ସେ ବାରି ପାରିଲା । କ୍ଲବର୍ ଧରିନେଲେ ସେ ରେଡ଼ିଓର ଭାଲ୍‌ଭ୍ ଗରମ ହୋଇଯିବାରୁ ରାଟଲ୍ ସ୍ନେକ୍ ସେହି ଉତ୍ତାପକୁ ବାରି ପାରିବାକୁ ସକ୍ଷମ ହୋଇପାରୁଛି ଓ କାର୍ଡ଼ବୋର୍ଡ଼ରେ ଅନୁଭୂତ ହୋଇଥିବା କମ୍ପନକୁ ବାରିନେଇ ରାଟ୍‌ଲ୍ ସ୍ନେକ୍ ନିଜର ପ୍ରତିକ୍ରିୟା ପ୍ରକାଶ କରୁଛି । କାର୍ଡ଼ବୋର୍ଡ଼ ବାକ୍ସ ବଦଳରେ ବାଉଁଶ ତିଆରି ବାକ୍ସ ଭିତରେ ରାଟ୍‌ଲ ସ୍ନେକ୍‌କୁ ରଖିଲେ ମଧ୍ୟ ଠିକ୍ ଏକାଭଳି ଫଳ ପ୍ରକାଶ ପାଉଥିବାର ସେ ଦେଖିବାକୁ ପାଇଲେ । କ୍ଲବରଙ୍କ ହାତକୁ ବାଉଁଶ ବାକ୍ସରେ ରହିଥିବା ଛୋଟ ଫାଙ୍କ ଭିତରେ ଦେଖିପାରି ରାଟ୍‌ଲ ସ୍ନେକ୍ ସେଥିପ୍ରତି ନିଜର ପ୍ରତିକ୍ରିୟା ପ୍ରକାଶ କରୁଥିଲା । ଏହି ପରୀକ୍ଷାରୁ କ୍ଲବର୍ ପ୍ରମାଣ କରିଦେଲେ ଯେ କୌଣସି ପ୍ରାଣୀର ଇନ୍ଦ୍ରିୟାନୁଭୂତି ସଂବନ୍ଧରେ ପରୀକ୍ଷା କରିବା ବେଶ୍ କଷ୍ଟକର ବ୍ୟାପାର । ତାହାଛଡ଼ା ଅତି ସାମାନ୍ୟ ଧରଣର ଗତିକୁ ସାପର ଆଖି ସହଜରେ ଧରି ପାରୁଥିବାର ମଧ୍ୟ ପ୍ରମାଣିତ ହୋଇଗଲା ।



## ପୃଥିବୀର ସବୁଠାରୁ ଓଜନିଆ ସାପ –

# ଆନାକୋଣ୍ଡା

ଦକ୍ଷିଣ ଆମେରିକାରେ ଆନାକୋଣ୍ଡା ସମ୍ପର୍କୀୟ ଲୋକକଥା ଓ ଲୋକଗୀତର ସଂଖ୍ୟା ଅସୁମାରି । ଏପରିକି ଦକ୍ଷିଣ ଆମେରିକାର ଟାମୁରା ଭାରତୀୟ ସଂପ୍ରଦାୟ ଆନାକୋଣ୍ଡାମାନଙ୍କର ବଂଶଧର ବୋଲି ଦାବି କରିଥାନ୍ତି । ସୂର୍ଯ୍ୟ ବୁଡ଼ିଗଲେ ଆନାକୋଣ୍ଡା ଧଳାରଙ୍ଗର ପାଲଥିବା ଏକ ବୋଇତରେ ପରିଣତ ହୋଇଯାଏ ବୋଲି ଅନ୍ଧବିଶ୍ୱାସ ପ୍ରଚଳିତ ।

ଆନାକୋଣ୍ଡାର ଆକାରକୁ ନେଇ ଯଥେଷ୍ଟ ଅତିରଞ୍ଜନ ବର୍ଣ୍ଣନାମାନ ରହିଛି । ଏଭଳି ବର୍ଣ୍ଣନାକୁ କଳ୍ପନା ବିଳାସ ବୋଲି କହିଲେ କିଛି ଭୁଲ୍ ହେବ ନାହିଁ । କିଛିଦିନ ତଳେ ପ୍ରକାଶ ପାଇଥିବା ଏକ ପୁସ୍ତକରେ ୧୪୦ ଫୁଟ ଲମ୍ବ ବିଶିଷ୍ଟ ଏକ ଆନାକୋଣ୍ଡା ସମ୍ବନ୍ଧରେ ଉଲ୍ଲେଖ କରାଯାଇଛି । ଉକ୍ତ ପୁସ୍ତକର ଲେଖକ ନିଜେ କୁଆଡ଼େ ୪୫ ଫୁଟ ଲମ୍ବର ଏକ ଆନାକୋଣ୍ଡାର ହାବୁଡ଼େ ପଡ଼ିଥିଲେ ଓ ତାକୁ ଗୁଳିକରି ମାରିଦେବାରୁ ତାହାର କବଳରୁ ବର୍ତ୍ତିଯାଇଥିଲେ । ସେହିପରି ବିଶିଷ୍ଟ ଅନ୍ୱେଷଣକାରୀ କର୍ଣ୍ଣେଲ ଫସେଟ୍ ୬୨ ଫୁଟ ଦୀର୍ଘ ଏକ ଆନାକୋଣ୍ଡାକୁ ମାରି ଦେଇଥିବାର ଦାବି କରିଥିଲେ ମଧ୍ୟ ଲଣ୍ଡନବାସୀମାନେ ତାଙ୍କୁ 'ନିପଟ ମିଛୁଆ' ବୋଲି ଅଭିହିତ କରିଛନ୍ତି ।

ଆନାକୋଣ୍ଡାର ଆକାର ବିଷୟରେ ବିଭିନ୍ନ ଲୋକ ବିଭିନ୍ନ ପ୍ରକାର କଥା କହୁଥିବାରୁ ଅନ୍ତତଃ ୩୦ ଫୁଟ ଲମ୍ବର ମୃତ କି ଜୀବିତ ଆନାକୋଣ୍ଡାଟିଏ ଆଣି ଦାଖଲ କଲେ ପାଞ୍ଚହଜାର ଡଲାର ପୁରସ୍କାର ଦିଆଯିବ ବୋଲି ନିୟୁୟର୍କ ପ୍ରାଣୀବିଜ୍ଞାନ ସମିତି ବହୁଦିନ ତଳେ ଘୋଷଣା କରିଥିଲେ । ସେହି ପୁରସ୍କାର ଲାଭ କରିବା ନିମନ୍ତେ ଆଜି ପର୍ଯ୍ୟନ୍ତ ବି କେହି ସମର୍ଥ ହୋଇପାରି ନାହାନ୍ତି ।

ତେବେ ଆନାକୋଣ୍ଡା ବିଷୟରେ ଯାହାକିଛି କୁହାଯାଇଥାଏ, ସବୁ କଥା ସତ ନୁହେଁ କି ସବୁକଥା ମିଛ ବି ନୁହେଁ । ଆନାକୋଣ୍ଡା ମଣିଷ ଶିକାର କରୁଥିବାର ଯେଉଁ ଦାବି କରାଯାଇଥାଏ, ତାହାକୁ ମଧ୍ୟ ପୂରାପୂରି ଅସ୍ୱୀକାର କରିହେଉନାହିଁ । ମଣିଷ ମାଂସ ପ୍ରତି ଆନାକୋଣ୍ଡାର କୌଣସି ବିଶେଷ ଆକର୍ଷଣ ନଥିଲେ ମଧ୍ୟ ନିଜକୁ ରକ୍ଷା କରିବା ନିମନ୍ତେ ମଣିଷ ଉପରେ ଆକ୍ରମଣ କରିବା ପାଇଁ ଆନାକୋଣ୍ଡା ଅବା କୁଣ୍ଠିତ ହେବ କାହିଁକି ?

ରୋଲଫ୍ ବ୍ଲମ୍‌ବର୍ଗ ଆନାକୋଣ୍ଡାର ଚାଲିଚଳଣ ଓ ଗତିବିଧି ବିଷୟରେ ବହୁ ଗବେଷଣା କରିଛନ୍ତି । କିନ୍ତୁ ଆନାକୋଣ୍ଡା ମଣିଷ ଶିକାର କରୁଥିବା ସମ୍ବନ୍ଧରେ ସେ ମାତ୍ର ଦୁଇଟି ବିଶ୍ୱାସଯୋଗ୍ୟ ଘଟଣାର ଉଲ୍ଲେଖ କରିଛନ୍ତି । ଗୋଟିଏ ଘଟଣାରେ ଆନାକୋଣ୍ଡାର କବଳରେ ପଡ଼ିଥିଲା ଏକ ତେରବର୍ଷର ପିଲା । ସେ ତା'ର ସାଙ୍ଗସାଥୀମାନଙ୍କ ସହ ନଦୀରେ ଗାଧୋଉଥିଲାବେଳେ ହଠାତ୍ ଅଦୃଶ୍ୟ ହୋଇଗଲା । ବହୁତ ଖୋଜାଖୋଜି କଲାପରେ ପିଲାଟି ମିଳିଲା ନାହିଁ ସିନା, କିନ୍ତୁ ପାଖରେ ମିଳିଗଲା ଏକ ଆନାକୋଣ୍ଡା । ପିଲାଟିର ବାପା ଆନାକୋଣ୍ଡାକୁ ମାରିଦେବାରୁ ଆନାକୋଣ୍ଡା ମଲାପିଲାଟିକୁ ବାନ୍ତିକରି ପକାଇଲା ବୋଲି ବ୍ଲମ୍‌ବର୍ଗ ଉଲ୍ଲେଖ କରିଛନ୍ତି ।



**ଆନାକୋଣ୍ଡା**

ଅନ୍ୟ ଏକ ଘଟଣାରେ ଆନାକୋଣ୍ଡା ହାବୁଡ଼େ ପଡ଼ିଥିଲା ଏକ ବୟସ୍କ ବ୍ୟକ୍ତି । ଉକ୍ତ ବ୍ୟକ୍ତିଟି ନଦୀରେ ପହଁରୁଥିଲାବେଳେ ହଠାତ୍ ବୁଡ଼ିଗଲା । ପରେ ତା'ର ଶବଟି ପାଣିରେ ଭାସୁଥିବାର ଦେଖିବାକୁ ମିଳିଲା । ବ୍ୟକ୍ତିଟିକୁ ଆନାକୋଣ୍ଡା ଗିଳିଥିବାର କୌଣସି ପ୍ରମାଣ ମିଳିନଥିଲେ ମଧ୍ୟ ତାକୁ କେହି ଅତି ଦୃଢ଼ଭାବରେ ଭିଡ଼ିଭାଡ଼ି ଧରିଥିବାର ଚିହ୍ନ ରହିଥିଲା ତା'ର ଶରୀରରେ ।

ଏହି ଦୁଇଟି ଘଟଣାକୁ କେହି କେହି ବିଶ୍ୱାସ କରୁଛନ୍ତି ତ ଅନ୍ୟ କେହି କେହି ବିଭିନ୍ନ ଯୁକ୍ତି ଦେଖାଇ ଆନାକୋଣ୍ଡା ସହ ସେମାନଙ୍କର ମୃତ୍ୟୁର କିଛି ସମ୍ପର୍କ ନାହିଁ ବୋଲି କହୁଛନ୍ତି । ତେବେ ଅତି ବୃହତ୍‌କାୟ ଆନାକୋଣ୍ଡାମାନଙ୍କୁ ଛାଡ଼ିଦେଲେ ଅଧିକାଂଶ ଆନାକୋଣ୍ଡା ମଣିଷକୁ ଗିଳିବା ପାଇଁ ସକ୍ଷମ ହୋଇପାରନ୍ତି ନାହିଁ । ତଥାପି ନଦୀତୀରର ପାଖାପାଖି ଅଞ୍ଚଳରୁ କୌଣସି ଲୋକ ନିଖୋଜ ହୋଇଗଲେ ଓ ଆଖ ପାଖରେ ଆନାକୋଣ୍ଡାର ସନ୍ଧାନ ମିଳିଗଲେ ଆନାକୋଣ୍ଡାକୁ ହିଁ ଆତତାୟୀ ହିସାବରେ ଅଭିଯୁକ୍ତ କରାଯିବା ଏକ ସାଧାରଣ ଅଭ୍ୟାସରେ ପଡ଼ିଗଲାଣି । ଏହାର ସତ୍ୟାସତ୍ୟ ଅନୁସନ୍ଧାନ ନ କରି ଆନାକୋଣ୍ଡାର ମଣିଷ ଶିକାର ସମ୍ବନ୍ଧୀୟ ଗୁଜବ ପ୍ରସରିବାରେ ଲାଗିଛି ।

ହେଲେ ଆନାକୋଣ୍ଡାର ପରିଚୟ କଅଣ ? ଆନାକୋଣ୍ଡା ହେଉଛି ବିଷ ନ ଥିବା ଏକ ଜାତୀୟ ସାପ । ଏହି 'ଆନାକୋଣ୍ଡା' ନାମଟି ବୋଧହୁଏ ତାମିଲ୍ ଭାଷାରୁ ଆସିଛି । ତାମିଲ୍ ଭାଷାରେ 'ଆନାଇ' ଶବ୍ଦର ଅର୍ଥ ହେଉଛି ହାତୀ ଏବଂ 'କୋଲ୍‌ରା' ଶବ୍ଦର ଅର୍ଥ ହତ୍ୟାକାରୀ । ଆନାକୋଣ୍ଡା ତା'ର ବଳିଷ୍ଠ ଆଲିଙ୍ଗନ ପାଶରେ ହାତୀକୁ କବଳିତ କରିପାରିବାକୁ ସକ୍ଷମ ବୋଲି ଭାବି ହୁଏତ ତା'ର ସେପରି ନାମକରଣ କରାଯାଇ ପାରିଥାଏ । ଆମ ଦେଶରେ ଦେଖାଯାଉଥିବା ଅଜଗର ସାପର ପ୍ରକୃତି ସହ ଆନାକୋଣ୍ଡାର ପ୍ରକୃତି କେତେକାଂଶରେ ମିଳିଯାଏ ।

## ଶରୀର ବର୍ଣ୍ଣନା ଓ ବାସସ୍ଥାନ :

ଆନାକୋଣ୍ଡାର ରଙ୍ଗ ଶାଗୁଆ । ଦେହସାରା କଳାରଙ୍ଗର ଗୋଲ ଗୋଲ ଦାଗ । ମୁଣ୍ଡରେ ରହିଥାଏ ଫିକା ଫିକା ଲମ୍ବାଳିଆ ରେଖା ଦୁଇଟି । ତେବେ ପ୍ରକାରଭେଦରେ ଆନାକୋଣ୍ଡାର ରଙ୍ଗ ଏବଂ ଆକାରରେ ଭିନ୍ନତା ପରିଲକ୍ଷିତ ହୁଏ । ମୁଖ୍ୟତଃ ଦକ୍ଷିଣ ଆମେରିକା ହିଁ ଆନାକୋଣ୍ଡାର ବାସସ୍ଥାନ । ଆମେଜନ୍ ନଦୀର ତୀରବର୍ତ୍ତୀ ଅଞ୍ଚଳରେ ଏମାନଙ୍କର ଗତାଗତ ବେଶି । ଗିନି, ତ୍ରିନିଦାଦ୍ ଓ ପାରାଗୁଏରେ ମଧ୍ୟ ଏମାନଙ୍କୁ ଦେଖିବାକୁ ମିଳେ । ଆମ ଦେଶରେ ଏମାନେ ଦେଖାଯାନ୍ତି ନାହିଁ ।

ଆନାକୋଣ୍ଡା ପ୍ରାୟତଃ କୌଣସି ଜଳଉତ୍ସର ପାଖାପାଖି ଅଞ୍ଚଳରେ ବାସ କରେ । ତେଣୁ ଆନାକୋଣ୍ଡାର ନାମ 'ୱାଟର୍‌ବୋଆ' ବା 'ଜଳବୋଆ' । ବୋଆସାପ ଭଳି ଆନାକୋଣ୍ଡା ମଧ୍ୟ ଶିକାର ଦେହରେ ଗୁଡ଼ାଇ ହୋଇ ଶିକାରକୁ ମାରିଦିଏ । ନଦୀ, ଝରଣା ଓ ପାଣିଥିବା ସନ୍ତସନ୍ତିଆ ସ୍ଥାନ ଆନାକୋଣ୍ଡାର ପ୍ରିୟ । ମାଟି ଉପରେ ଏହା ଖୁବ୍ ଧୀରେ ଶିକାର କରିବାକୁ ପଡ଼େ ।

ଧୀରେ ଗତି କରୁଥିଲେ ମଧ୍ୟ ଜଳରେ ଏହା ଖୁବ୍ ଦ୍ରୁତ ଗତିରେ ପହଁଚିପାରେ । ଏପରିକି ଜଳ ଉପରେ ଅତି ସ୍ଥିର ଭାବରେ ପଡ଼ିରହି ଆନାକୋଣ୍ଡା ଜଳସ୍ରୋତରେ ଆଗକୁ ଭାସି ଯାଉଥିବାର ଦେଖାଯାଏ । ତେବେ ସ୍ରୋତଥିବା ଜଳ ଅପେକ୍ଷା ସ୍ଥିରଜଳ ପ୍ରତି ଆନାକୋଣ୍ଡାର ପସନ୍ଦ ବେଶି ।

## ଶିକାର :

ପ୍ରତି ଆନାକୋଣ୍ଡାର ଶିକାର କରିବା ଅଞ୍ଚଳ ନିର୍ଦ୍ଦିଷ୍ଟ । ସେହି ଅଞ୍ଚଳ ଭିତରେ ସେ ପ୍ରାୟତଃ ଏକୁଟିଆ ଚଳାଚଳ ହୋଇଥାଏ । କଦବା କେମିତି ଆନାକୋଣ୍ଡାମାନେ ଦଳବାନ୍ଧି ରହିଥାନ୍ତି ।

ଆନାକୋଣ୍ଡା ସାଧାରଣତଃ ନିଶାଚର । ଦିନବେଳା ଆନାକୋଣ୍ଡା ପାଣି ପାଖାପାଖି ଖାଲୁଆ ଜାଗାରେ ପଡ଼ି ରହିଥାଏ । ପାଣି ପାଖରେ ଥିବା ଗଛର ନୁଆଁଣିଆ ଡାଳରେ ଗୁଡ଼େଇ ହୋଇ ସେ ଖରା ପୋଇଁବାର ମଧ୍ୟ ଦେଖାଯାଇଥାଏ । ତେବେ ଦିନଟା ସାରା ଏଭଳି ଅଳସୁଆ ଭାବରେ ଶିକାର ଅପେକ୍ଷାରେ କଟାଇଦିଏ ଆନାକୋଣ୍ଡା ।

ରାତିହେଲେ ଜନ୍ତୁମାନେ ପାଣି ପିଇବାକୁ ଗଡ଼ନ୍ତି । ଆନାକୋଣ୍ଡା ଏହି ସୁଯୋଗକୁ ହାତଛଡ଼ା କରେ ନାହିଁ । ଶିକାରକୁ ଦେଖିଲାମାତ୍ରେ ସେ ଶିକାର ଉପରକୁ ଲମ୍ଫ ଦିଏ ଓ ଶିକାରକୁ ମୁଣ୍ଡରେ କାମୁଡ଼ି ଧରି ତା'ର ଦେହସାରା ଜୋର୍‌ରେ ଗୁଡ଼େଇ ହୋଇଯାଏ । ତା'ପରେ ଶିକାରକୁ ପାଣି ଭିତରକୁ ଘୋଷାରି ନେଇ ପାଣିରେ ବୁଡ଼ାଇ ରଖେ । ଏହା ଫଳରେ ଶିକାରଟି ଅଣନିଃଶ୍ୱାସୀ ହୋଇ ମରିଯାଏ । ଆନାକୋଣ୍ଡା ଭୂମି ଉପରେ ମଧ୍ୟ ଶିକାର କରିଥାଏ ।

ସାଧାରଣତଃ ବଡ଼ ପକ୍ଷୀ, ହରିଣ, ବଣ ଘୁଷୁରି ଓ କୁମ୍ଭୀରଜାତୀୟ ପ୍ରାଣୀ ଆନାକୋଣ୍ଡାର ଶିକାର ହୋଇଥାନ୍ତି । ଆନାକୋଣ୍ଡା ମଧ୍ୟ ମାଛଧରି ଖାଏ । ଆନାକୋଣ୍ଡା କଇଁଚ ଶିକାର କରୁଥିବାର ପ୍ରମାଣ ମିଳିଛି । ଏପରିକି ପଚିଶଫୁଟ ଲମ୍ବର ଏକ ଆନାକୋଣ୍ଡା ଛଅଫୁଟ ଲମ୍ବ ବିଶିଷ୍ଟ କୁମ୍ଭୀରଟିଏ ଗିଳି ଦେଇଥିବାର ବିଶ୍ୱାସଯୋଗ୍ୟ ପ୍ରମାଣ ରହିଛି । ଏଭଳି ବଡ଼ ବଡ଼ ଶିକାର ମିଳିଗଲେ ହୁଏତ କେତେକ ସପ୍ତାହ ପର୍ଯ୍ୟନ୍ତ ଆନାକୋଣ୍ଡାର କିଛି ଖାଇବା ଦରକାର ପଡ଼େ ନାହିଁ । ଶିକାର ଗିଳିସାରି ସେ ନିର୍ଜୀବ ହୋଇ ପଡ଼ିରହେ । ଏହି ସମୟ ଭିତରେ ତା'ର ଶରୀର ଭିତରେ ହଜମ କ୍ରିୟା ଚାଲୁ ରହିଥାଏ । କଦବା କେମିତି ବୃହତ୍‌କାୟ ପ୍ରାଣୀ ଶିକାର କରୁଥିଲେ ମଧ୍ୟ ସାଧାରଣ ଭାବରେ ଆନାକୋଣ୍ଡା ଛୋଟ ଛୋଟ ଶିକାର ଖାଇଥାଏ ଓ ସେପରି କ୍ଷେତ୍ରରେ ଭୋକ ମାରିବା ପାଇଁ ତାକୁ ବହୁବାର

ଅଧିକାଂଶ ସମୟରେ ଆନାକୋଣ୍ଡାକୁ ନିଜ ଶରୀରଠାରୁ ଅଧିକ ଓସାରିଆ ହୋଇଥିବାର ଶିକାର ଗିଳିବାକୁ ପଡ଼େ । ହେଲେ ଏଥିରେ ଆନାକୋଣ୍ଡାର କିଛି କ୍ଷତି ହୁଏନାହିଁ । ଆନାକୋଣ୍ଡାର ମସ୍ତିଷ୍କ ଟାଣୁଆ ମୋଟା ହାଡ଼ ଦ୍ୱାରା ସୁରକ୍ଷିତ । ତାହାଛଡ଼ା ତା'ର ତଳ ଓ ଉପର ପାଟି ଅତି ହୁଗୁଳା ଭାବରେ ପରସ୍ପର ସହ ସଂଯୁକ୍ତ ହୋଇଥାନ୍ତି । ତେଣୁ ଶିକାର ଗିଳିବା ପାଇଁ ପାଟିକୁ ଓସାରିଆ କରି ମେଲେଇବାରେ ତା'ର କିଛି ଅସୁବିଧା ନଥାଏ । ତାହାଛଡ଼ା ଶ୍ୱାସନଳୀ ଓ ଖାଦ୍ୟନଳୀ ଭିତରେ ଏକ ଭାଲ୍‌ଭ୍ ବା କପାଟିକା ରହିଥିବାରୁ ଖାଦ୍ୟ ଗିଳିବା ସମୟରେ ଆନାକୋଣ୍ଡା ନିଃଶ୍ୱାସ ପ୍ରଶ୍ୱାସ ନେବା ସମ୍ଭବ ହୋଇଥାଏ ।

ଶିକାର କଲାବେଳେ ଆନାକୋଣ୍ଡା ଅଜଗର ଅନୁସରଣ କଲାଭଳି କୌଶଳ ଅବଲମ୍ବନ କରିଥାଏ । ଶିକାରକୁ କାବୁ କରିବା ପାଇଁ ଆନାକୋଣ୍ଡା ଶିକାରର ଚାରିକଡ଼େ ଗୁଡ଼େଇ ହୋଇଯାଏ । ଶିକାରଟି ଯେତେଥର ନିଃଶ୍ୱାସ ଛାଡ଼େ, ଆନାକୋଣ୍ଡା ସେତେଥର ଆହୁରି ଜୋର୍‌ରେ ଶିକାର ଛାତିକୁ ଭିଡ଼ି ଧରେ । ଫଳରେ ଶିକାରଟିର ଛାତି ପ୍ରସାରିତ ହୋଇପାରେ ନାହିଁ କି ସେ ପ୍ରଶ୍ୱାସରେ ବାୟୁ ଗ୍ରହଣ କରିପାରେ ନାହିଁ । ଏହି ପ୍ରକ୍ରିୟାରେ ଶିକାରର ହାଡ଼ ଇତ୍ୟାଦି ଭାଙ୍ଗିରୁଜି ଚୂନା ହୋଇଯାଏ ବୋଲି ଧରିନେବା ଠିକ୍ ନୁହେଁ । ଆନାକୋଣ୍ଡା ବାନ୍ତି କରି ପକାଇଥିବା ଶିକାରକୁ ଦେଖି କେହି କେହି ଭାବି ନିଅନ୍ତି ଯେ, ଗିଳିବାରେ ସୁବିଧା ହେବ ବୋଲି ଆନାକୋଣ୍ଡା ଶିକାରର ଶରୀରରେ ନିଜର ଲାଳ ବୋଳିଦିଏ । କିନ୍ତୁ ଶିକାରକୁ ଗିଳିବା ପୂର୍ବରୁ ଆନାକୋଣ୍ଡା ଶିକାର ଦେହରେ ଲାଳବୋଳି ତାକୁ ଲାଳୁଆ କରି ଦେଉଥିବାର କୌଣସି ପ୍ରମାଣ ନାହିଁ ।

## ପ୍ରଜନନ :

ଧରା ହୋଇ ଚିଡ଼ିଆଖାନାରେ ରହିଥିବା ଆନାକୋଣ୍ଡାମାନଙ୍କୁ ଲକ୍ଷ୍ୟକରି ସେମାନଙ୍କର ପ୍ରଜନନ ସମ୍ବନ୍ଧରେ କିଞ୍ଚିତ୍ ଆଲୋକପାତ କରାଯାଇଛି । ମାଈ ଆନାକୋଣ୍ଡାର ଶରୀରରୁ ବାହାରୁଥିବା ଏକ ପ୍ରକାରର ଗନ୍ଧକୁ ବାରି ଅଣ୍ଡିରା ଆନାକୋଣ୍ଡା ମାଈ ଆନାକୋଣ୍ଡା ପ୍ରତି ଆକୃଷ୍ଟ ହୋଇଥାଏ । ଉଭୟ କିଛି ସମୟ ଲଗାଲଗି ଚଳପ୍ରଚଳ ହୁଅନ୍ତି । ଏହି ସମୟରେ ଅଣ୍ଡିରା ଆନାକୋଣ୍ଡା ମାଈର ଶରୀରକୁ ନିଜର ଜିଭ ସାହାଯ୍ୟରେ ଚଟାଚଟି କରିବାରେ ଲାଗେ । ତା'ପରେ ଅଣ୍ଡିରା ଆନାକୋଣ୍ଡା ମାଈ ଆନାକୋଣ୍ଡାର ବେକ ଉପରେ ନିଜର ମୁଣ୍ଡ ରଖି ତାକୁ କବଳିତ କରିଦିଏ ଓ ମିଳନକ୍ରିୟା ସମ୍ପାଦନ କରେ ।

ତେବେ ମାଈ ଆନାକୋଣ୍ଡା ଅଣ୍ଡା ନ ଦେଇ ସିଧାସଳଖ ଛୁଆ ଜନ୍ମ କରିଥାଏ । ଥରକୁ ୨୦ରୁ ୪୦ଟି ପର୍ଯ୍ୟନ୍ତ ଛୁଆ ଜନ୍ମ ହୋଇଥାନ୍ତି । ବେଳେ ବେଳେ ଏହି ସଂଖ୍ୟା ଶହେ ପାଖାପାଖିରେ ପହଞ୍ଚି ଯାଇପାରେ । ସଦ୍ୟଜାତ ଆନାକୋଣ୍ଡା ଛୁଆର ଲମ୍ବ ଦୁଇରୁ ତିନିଫୁଟ ପର୍ଯ୍ୟନ୍ତ ହୋଇପାରେ ।

ସେ ଯାହାହେଉ ପୃଥିବୀର ସବୁଠାରୁ ଓଜନିଆ ସାପ ହିସାବରେ ଆନାକୋଣ୍ଡା 'ଗିନିସ୍ ବୁକ୍ ଅଫ୍ ୱାର୍ଲଡ୍ ରେକର୍ଡ଼'ରେ ସ୍ଥାନ ପାଇଛି । ୧୯୬୦ ମସିହାରେ ମରା ଯାଇଥିବା ସେହି ଆନାକୋଣ୍ଡାଟିର ଲମ୍ବ ଥିଲା ୨୭ ଫୁଟ ୯ ଇଞ୍ଚ ଏବଂ ଓଜନ ଥିଲା ୫୦୦ ପାଉଣ୍ଡ । ଉକ୍ତ ସାପଟି ଥିଲା ୩ ଫୁଟ ୮ ଇଞ୍ଚ ମୋଟା ।



# ଅଜଗର

ଅଜଗର ଏକ ବିରାଟ ସାପ । କିନ୍ତୁ ଏହାର ବିଷ ନଥାଏ । ଆଫ୍ରିକାରେ ଦେଖାଯାଉଥିବା ଅଜଗରର ଲମ୍ୱା ୩୨ଫୁଟ ପର୍ଯ୍ୟନ୍ତ ପହଞ୍ଚିଯାଏ । ଏହା ଭୂଇଁରେ ରହେ ଏବଂ ଗଛ ଚଢ଼ି ଡାଳରେ ମଧ୍ୟ ଗୁଡ଼େଇ ହୋଇ ରହିଥାଏ । ସାଧାରଣତଃ କୌଣସି ନା କୌଣସି ଜଳ ଉତ୍ସ ନିକଟରେ ସେମାନେ ଦେଖାଯାଇଥାନ୍ତି । ଭାରତ, ଚୀନ୍ ଏବଂ ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜରେ ମଧ୍ୟ ଅଜଗରମାନଙ୍କୁ ଦେଖିବାକୁ ମିଳେ । ଭାରତୀୟ ଅଜଗର ପ୍ରାୟ ୨୦ ଫୁଟ ଲମ୍ୱ ହୋଇଥାନ୍ତି ଓ ଏହା ଅର୍ଦ୍ଧ-ଜଳଚର ବୋଲି କୁହାଯାଇ ପାରେ । ମାଳୟ ଏବଂ ଇଣ୍ଡୋଚାଇନା ଅଞ୍ଚଳରେ ଦେଖା ଯାଉଥିବା ଜାଲି ଜାଲିଆ ଅଜଗର ଜନବସତିରେ ରହିବାକୁ ପସନ୍ଦ କରିଥାଏ । ସେଠାରେ ଏହା ଦିନବେଳା ଲୁଚି ରହି ରାତିରେ ଶିକାର ଖୋଜି ବାହାରେ ଏବଂ ମୂଷା, ବିରାଡ଼ି, କୁକୁର ଏବଂ କୁକୁଡ଼ା ମାରି ଖାଏ । ଜନବସତି ନିକଟରେ ରହୁଥିବାରୁ ଜାହାଜରେ ବୋଝେଇ ହେଉଥିବା ମାଲମତା ସାଙ୍ଗରେ ଏହା ଜାହାଜ ଭିତରକୁ ମଧ୍ୟ ପ୍ରବେଶ କରିଯିବାର ଦୃଷ୍ଟାନ୍ତ ରହିଛି । ଏପରିକି ଗୋଟିଏ ଅଜଗର ଇଣ୍ଡୋନେସିଆରୁ ଜାହାଜରେ ଯାଇ ଲଣ୍ଡନରେ ମଧ୍ୟ ପହଞ୍ଚି ପାରିଥିଲା । ଅଜଗର ଭଲ ପହଁରି ପାରେ ।

ଅଜଗର ଜୀଅନ୍ତା ଜନ୍ତୁଙ୍କୁ ଶିକାର କରିବା ପସନ୍ଦ କରିଥାଏ । ଏହା ଶିକାରକୁ ଧରି ତା ଚାରିପଟେ ଜୋରରେ ଗୁଡ଼େଇ ହୋଇଯାଏ । ଶିକାରକୁ ନିଜ ଘେର ଭିତରେ ଚାପି ରଖିବାରୁ ଶିକାରଟି ନିଶ୍ୱାସ ପ୍ରଶ୍ୱାସ ନେଇ ନପାରି ମୃତ୍ୟୁ ବରଣ କରିବାକୁ ବାଧ୍ୟ ହୁଏ । ଶିକାରକୁ ଏହିପରି ନିଷ୍କଳ ଭାବରେ କବଳିତ କରି ସେ ଧୀରେ ଧୀରେ ଶିକାରକୁ ଗିଳିବାକୁ ଲାଗେ ।

ଅଜଗରର ଶିକାର କ୍ରିୟା ଖୁବ୍ ଅତର୍କିତ । ସାପଟି ଶିକାର ସନ୍ଧାନରେ ଅପେକ୍ଷା କରି ରହିଥାଏ । ଶିକାରଟି ହାବୁଡ଼େ ପଡ଼ିଗଲେ, ସେ ତାହା ଉପରକୁ ଲମ୍ଫ ଦେଇ ନିଜ ମୁଣ୍ଡ ଦ୍ୱାରା ଆଘାତ କରେ ଓ ଶିକାରକୁ ନିଜ ମାଢିରେ କାମୁଡ଼ି ଧରି ତା ଚାରିପଟେ ଗୁଡ଼େଇ ହୋଇଯାଏ । ଅଜଗରର ଶିକାର ତାଲିକା ବେଶ୍ ଦୀର୍ଘ । ତେବେ ସ୍ତନ୍ୟପାୟୀ ପ୍ରାଣୀମାନେ ଅଜଗରର ପ୍ରଥମ ପସନ୍ଦ ହୋଇଥିଲେ ମଧ୍ୟ ସେ ଚଢେଇ ଶିକାର କରି ମଧ୍ୟ ଖାଇଥାଏ । ପଥୁରିଆ ଅଜଗର ମାଛ ଖାଉଥିବାର ବିଶ୍ୱାସ କରାଯାଏ । ମୂଷା, ଠେକୁଆ, ହରିଣ, ବିଲୁଆ, ମାଙ୍କଡ଼, ପାରା, ହଂସ ଇତ୍ୟାଦି ଅଜଗରର ଶିକାର ହେଉଥିବା ଜଣା ପଡ଼ିଛି । ୧୮ ଫୁଟ ଲମ୍ୱ ଗୋଟିଏ ଆଫ୍ରିକୀୟ ଅଜଗର ଏକ କଇରା ପତରିଆ ବାଘ ଶିକାର କରିଥିବାର ମଧ୍ୟ ପ୍ରମାଣ ରହିଛି । ଶିକାର ଯୋଗୁଁ ଅଜଗର ନିଜେ ଶିକାର ହୋଇ ଯାଉଥିବାର ମଧ୍ୟ ଦୃଷ୍ଟାନ୍ତ ଦେଖିବାକୁ ମିଳେ । ବିଶେଷ କରି ଝିଙ୍କ ଶିକାର କଲେ ଝିଙ୍କର ମୁନିଆଁ ପର ଅଜଗରକୁ କ୍ଷତବିକ୍ଷତ କରି ତାର ମୃତ୍ୟୁ ଘଟାଇଥାଏ । ହରିଣ ଶିକାର କଲେ ହରିଣର ମୁନିଆଁ ଶିଙ୍ଗ ହୁଏ ତା ପାଇଁ କାଳ ।



ଶିକାରଟି ବଡ଼ ଆକାର ବିଶିଷ୍ଟ ହୋଇଥିଲେ ଥରେ ଶିକାର କରି ଅଜଗର କିଛି ଦିନ ଚଳିଯାଏ । କିନ୍ତୁ ଶିକାରର ଆକାର ଛୋଟ ହୋଇଥିଲେ ଲାଗ୍‌ଲାଗ୍ ଏକାଧିକ ଶିକାର କରିବାକୁ ପଡ଼ିଥାଏ ତାକୁ । ଗୋଟିଏ ଆଫ୍ରିକୀୟ ଅଜଗର ତିନିଟି ବିଲୁଆ ଏବଂ ଗୋଟିଏ ଛୋଟ ଅଜଗର ଶିକାର କରି ଖାଇ ସାରିବା ପରେ ପରେ ଅଳ୍ପ ସମୟ ବ୍ୟବଧାନରେ ତିନିଟି ଘର ଚଟିଆ ମାରି ଖାଇଥିବାର ପ୍ରମାଣ ଅଛି ।

ଅଜଗର ମଣିଷ ମାରି ଖାଇଥିବାର କାଁ ଭାଁ ଦୃଷ୍ଟାନ୍ତ ମଧ୍ୟ ରହିଛି । ମାଳୟର ସାଲେବାବୁ ଦ୍ୱୀପରେ ଅଜଗରଟିଏ ଏକ ୧୪ ବର୍ଷ ବୟସ୍କ ବାଳକକୁ ଶିକାର କରି ପକେଇଥିଲା ।

ଅଜଗର ମାନଙ୍କର ମିଳନ ପର୍ବ ବିଶେଷ ଆକର୍ଷଣୀୟ ନୁହେଁ । ଅଣ୍ଡିରା ଅଜଗର ମାଈ ଅଜଗର ଉପରକୁ ଆରୋହଣ କରିବାକୁ ଚେଷ୍ଟା କରିଥାଏ । ବେଳେ ବେଳେ ଉଭୟ ଏକତ୍ର ଏପଟ ସେପଟ ହୋଇ ଦୋହଲିବାରେ ଲାଗିଥାନ୍ତି । ଅଣ୍ଡିରା ସାପ ମାଈ ସାପର ଶରୀର ଉପରକୁ ଉଠିଯାଏ । ନିଜର ମଳଦ୍ୱାର ନିକଟରେ ଥିବା ଅଙ୍ଗାବଶେଷକୁ ମାଈ ସାପର ଶରୀରରେ ଘଷି ତାକୁ ଉତ୍ତୋଜିତ କରାଏ । ମାଈ ସାପଟି ଉତ୍ତେଜିତ ହୋଇ ନିଜର ଶରୀରକୁ ଭୂଇଁରୁ ଉଠେଇବା ମାତ୍ରେ ଅଣ୍ଡିରା ସାପଟି ତା଼ର ଚାରିପଟେ ଗୁଡ଼େଇ ହୋଇ ତାକୁ କବଳିତ କରିପକାଏ । ଏହି ପ୍ରକାରେ ସଂପାଦିତ ହୁଏ ସେମାନଙ୍କର ଯୌନ ମିଳନ ।

ମାଈ ଏବଂ ଅଣ୍ଡିରା ଅଜଗର ମିଳନର ତିନି ଚାରି ମାସ ପରେ ମାଈ ଅଜଗର ୧୦୦ ପାଖାପାଖି ଅଣ୍ଡା ଦେଇଥାଏ । ସବୁଯାକ ଅଣ୍ଡାକୁ ଏକାଠି ରଖି ଅଣ୍ଡା ଚାରିପଟେ ବୃତ୍ତାକାରରେ ଗୁଡ଼େଇ ହୋଇ ରହେ । ଏହି ସମୟରେ କାଁ ଭାଁ ଜଳପାନ ଉଦ୍ଦେଶ୍ୟରେ ବାହାରକୁ ଯାଇଥାଏ ସେ । ଅଣ୍ଡା ଉଷୁମେଇବା କାଳ ଦୁଇରୁ ତିନି ମାସ । ଏହି ସମୟରେ ସେ ଶିକାରରେ ଆଦୌ ମନୋନିବେଶ କରେ ନାହିଁ । ଭାରତୀୟ ଅଜଗର ଛୁଆ ଗୋଟିଏ ବର୍ଷ ଭିତରେ ନିଜ ଜନ୍ମ ସମୟ ଲମ୍ବର ତିନିଗୁଣ ଲମ୍ବ ହୋଇଯାଏ । ଅଜଗରମାନେ ପାଖିପାଖି ୨୦ ବର୍ଷ ପର୍ଯ୍ୟନ୍ତ ବଞ୍ଚି ରହି ପାରନ୍ତି ।

ଅଜଗରର ଯେ ଶତ୍ରୁ ନାହାନ୍ତି, ତାହା ନୁହେଁ । କୁମ୍ଭୀର , ହେଟାବାଘ ଏବଂ ବାଘମାନେ ଛୋଟ ଛୋଟ ଅଜଗରକୁ ଖାଇ ଦେଉଥିବାର ପ୍ରମାଣ ଅଛି । ଦୁଇଟି ଓଧ ୧୭ ଫୁଟ ଲମ୍ବ ଏକ ଅଜଗରକୁ ମାରି ଦେଇଥିବାର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଉଲ୍ଲେଖ କରିଛନ୍ତି ବିଶିଷ୍ଟ ଶିକାରି ଜିମ୍ କର୍‌ବେଟ୍ ।

ଭାରତୀୟ ଏବଂ ଆଫ୍ରିକୀୟ ବହୁ ଲୋକଗଳ୍ପରେ ଅଜଗର ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି ।



# କୋରାଲ ସାପ

କୋରାଲ ସାପ ଅତି ଆକର୍ଷଣୀୟ ଭାବରେ ରଙ୍ଗିନ୍ । ତାର ଶରୀର ଏବଂ ଲାଞ୍ଜରେ ରଙ୍ଗବେରଙ୍ଗ ପଟିମାନ ରହିଥାଏ । ଦେହଟି ବେଶ୍ ସରୁ । ମୁଣ୍ଡ ଆଉ ବେକର ମୋଟେଇ ସମାନ ହୋଇଥିବାରୁ ବେକକୁ ସ୍ୱତନ୍ତ୍ର ଭାବରେ ବାରି ହୁଏ ନାହିଁ । ଉତ୍ତର ଆମେରିକା, ଦକ୍ଷିଣ ଆମେରିକା, ଆଫ୍ରିକା ଏବଂ ଏସିଆ ମହାଦେଶରେ ଏମାନଙ୍କୁ ଦେଖିବାକୁ ମିଳେ । ଭାରତ, ବର୍ମା (ମିଆମାର), ନେପାଳ, ମାଳୟ ଇତ୍ୟାଦି ଏସୀୟ ଦେଶମାନଙ୍କରେ ବିଭିନ୍ନ ପ୍ରକାରର କୋରାଲ ସାପ ଦେଖା ଯାଇଥାନ୍ତି । ସ୍ଥାନ ଭେଦରେ ସେମାନେ ଧଳାଦାଗିଆ, ସରୁଆ, ଛାପ ଛାପିଆ ଇତ୍ୟାଦି । ଭାରତରେ ଦେଖା ଯାଉଥିବା ଧଳାଦାଗିଆ କୋରାଲ ସାପର ପେଟ, ମୁଣ୍ଡ ଏବଂ ଲାଞ୍ଜ ନାଲି ରଙ୍ଗର । ଏମାନଙ୍କର ପିଠିରେ ଘନ କଳା ସାଙ୍ଗରେ ଚାରିଟି ଧଳାରେଖା ଥାଏ ।

କୋରାଲ ସାପ ବିଷାକ୍ତ ହେଲେ ମଧ୍ୟ ମାରାତ୍ମକ ନୁହେଁ । ଏହା ନାଗ ସାପ ଭଳି ଚୋଟ ମାରେ ନାହିଁ । ଶିକାର ଆଡ଼କୁ ଏହା ଧୀରେ ଧୀରେ ଅଗ୍ରସର ହୋଇ ଶିକାର ଉପରେ ମୁଣ୍ଡ ଘଷି କାମୁଡ଼ିଥାଏ । ଏହାର ବିଷଦାନ୍ତ ଦୁଇଟି ଛୋଟ । ତେଣୁ ଶିକାର ଭିତରକୁ ବେଶୀ ପରିମାଣରେ ବିଷ ଭର୍ତ୍ତି କରିବା ନିମନ୍ତେ ଏହା ଶିକାରର ମାଂସକୁ ଚୋବାଇ ଚମକୁ ଖଣ୍ଡିଆ ଖାବରା କରି ପକାଏ । ଫଳରେ ଶିକାର ଭିତରେ ଅଧିକ ବିଷ ପଶିଯାଏ । କୋରାଲ ସାପର ବିଷ ସ୍ନାୟୁ ପ୍ରଣାଳୀ ଉପରେ କ୍ରିୟା କରିଥାଏ । ମେକ୍ସିକୋରେ ଦେଖାଯାଉଥିବା କୋରାଲ ସାପକୁ କୁହାଯାଏ '୨୦ ମିନିଟ୍' ସାପ । କାରଣ ସାପଟି ମଣିଷକୁ କାମୁଡ଼ିବାର ପ୍ରାୟ ୨୦



ମିନିଟ୍ ମଧ୍ୟରେ ବ୍ୟକ୍ତି ମୃତ୍ୟୁବରଣ କରିଥାଏ । ତେବେ ସାଧାରଣ ଭାବରେ ଦେଖିଲେ ସାପ ମଣିଷକୁ କାମୁଡ଼ିବାର ପ୍ରାୟ ୨୪ ଘଣ୍ଟା ଭିତରେ ହିଁ ଉକ୍ତ ବ୍ୟକ୍ତିର ମୃତ୍ୟୁ ଘଟିଥାଏ । କିନ୍ତୁ କୋରାଲ ସାପ କାମୁଡ଼ା ଯୋଗୁଁ ମଣିଷର ମୃତ୍ୟୁ ହେବାର ହାର ଯଥେଷ୍ଟ କମ୍ ।

କୋରାଲ ସାପ ସାଧାରଣତଃ ରାତ୍ରିଚର । ଏହା ଦିନବେଳା ପଥର ସନ୍ଧି ଓ ସନ୍ତସନ୍ତିଆ ଶିଉଳିଆ ଜାଗାରେ ଛପି ରହିଥାଏ । କିନ୍ତୁ ଦିନବେଳା ବର୍ଷା ଲାଗି ରହିଥିଲେ ସେମାନେ ଦିନରେ ବି ସକ୍ରିୟ ହୋଇ ଉଠନ୍ତି । ସେମାନେ ଲୁଚିଛପି ରହୁଥିବାରୁ ମଣିଷ ପାଇଁ ବିଶେଷ ବିପଦର କାରଣ ହୁଅନ୍ତି ।

କୋରାଲ ସାପ ତାର ପାଟିକୁ ବିସ୍ତାରିତ ଭାବରେ ମେଲାକରି ପାରେ ନାହିଁ । ପାଟି ଅଳ୍ପ ମେଲା ରହୁଥିବାରୁ ଛୋଟ ଛୋଟ ଶିକାର ଖାଇବାକୁ ସେ ବାଧ ହୋଇଥାଏ । ତେଣୁ ଛୋଟ ଝିଟିପିଟି, ଅନ୍ୟ ସାପର ଛୁଆ ଏବଂ ପୋକଜୋକ ହିଁ ତାର ଆହାର ।

କୋରାଲ ସାପ ଥରକୁ ୩-୧୪ଟି ପର୍ଯ୍ୟନ୍ତ ଅଣ୍ଡା ଦେଇଥାଏ । ଅଣ୍ଡାଗୁଡ଼ିକ ଛୋଟ ଏବଂ ଲମ୍ବାଳିଆ । ଭୂଇଁରେ ପଡ଼ିଥିବା କାଠଗଡ଼ର ସନ୍ଧି କିମ୍ବା ଭୂଇଁର ଖାଲୁଆ ଜାଗା ଅଣ୍ଡା ଦେବାର ପ୍ରକୃଷ୍ଟ ସ୍ଥାନ । ଅଣ୍ଡାଗୁଡ଼ିକ ୧୦-୧୨ ସପ୍ତାହ ପରେ ଫୁଟି ସେଥିରୁ ୭-୮ ଇଞ୍ଚ ଲମ୍ବର ଛୁଆ ବାହାରିଥା'ନ୍ତି । ସାପ ଛୁଆମାନଙ୍କର ରଙ୍ଗ ଫିକା ଥାଏ । କିନ୍ତୁ ବୟସ ବଢ଼ିଲେ ରଙ୍ଗ ଗାଢ଼ ହୋଇଆସେ ।

କୋରାଲ ସାପ ନିଜେ ସାପ ଖାଉଥିଲେ ମଧ୍ୟ ଅନ୍ୟ କେତକ ସାପ କୋରାଲକୁ ମଧ୍ୟ ଖାଇ ହଜମ କରି ଦିଅନ୍ତି । କୋରାଲକୁ ଖାଉଥିବା ସାପମାନଙ୍କ ଉପରେ କୋରାଲ ବିଷ କୌଣସି ପ୍ରତିକୂଳ ପ୍ରଭାବ ପକାଏ ନାହିଁ । ତ୍ରିନିଦାଦ୍‌ରେ କୋରାଲ ସାପକୁ ମାରିବା ପାଇଁ ନେଉଳମାନଙ୍କୁ ନିଯୁକ୍ତି କରାଯାଇଥିଲେ ମଧ୍ୟ ସାପ ବଂଶ ଉପରେ ଏହାର କୌଣସି ପ୍ରଭାବ ପଡୁନାହିଁ ।



# ଗଛ ସାପ

ବହୁ ପ୍ରକାରର ସାପ ଗଛରେ ବାସ କରିଥାନ୍ତି । ଦକ୍ଷିଣ ଏବଂ ଦକ୍ଷିଣପୂର୍ବ ଏସିଆ ଅଞ୍ଚଳରେ ଦେଖାଯାଉଥିବା ଗଛ ସାପ ଗଛ ଚଢାରେ ଖୁବ୍ ଦକ୍ଷ । ଏମାନଙ୍କୁ ଉଡ଼ନ୍ତା ସାପ କୁହାଯାଏ । ମାଳୟରେ ଦେଖାଯାଉଥିବା ଗଛ ସାପ ଦେଖିବାକୁ କଳା । କିନ୍ତୁ ତା'ର ପ୍ରତି କାତିରେ ଥାଏ



ଏକ ଉଜ୍ଜ୍ୱଳ ଶାଗୁଆ ଦାଗ । ଏହି ଶାଗୁଆ ଦାଗରେ ଏକ ଶୃଙ୍ଖଳିତ ବିନ୍ୟାସ ପରିଲକ୍ଷିତ ହୋଇଥାଏ । ପିଠି ଉପରେ ଚାରି ପାଖୁଡ଼ିଆ ଲାଲ୍ ଦାଗ ମଧ୍ୟ ରହିଥାଏ । ସାପର ପେଟପାଖ ହଳଦିଆସିଆ ସବୁଜ । ଶ୍ରୀଲଙ୍କାରୁ ଆରମ୍ଭ କରି ଫିଲିପିନ୍ସ୍ ପର୍ଯ୍ୟନ୍ତ ସମଗ୍ର ଦକ୍ଷିଣପୂର୍ବ ଏସିଆରେ ଦେଖିବାକୁ ମିଳନ୍ତି ସୁନେଲି ସାପ । ଏହାର ରଙ୍ଗ କଳା । ପିଠିରେ ସୁନେଲି କିମ୍ବା

ନାରଙ୍ଗୀ ରଙ୍ଗର ଦାଗ । ଠାଏ ଠାଏ ନାଲି ଦାଗ ମଧ୍ୟ ରହିଥାଏ । ଗଛ ସାପମାନେ ଖୁବ୍ ସରୁ । ସେମାନଙ୍କର ଲମ୍ବ ପାଖାପାଖି ୫ଫୁଟ । ଲାଞ୍ଜ ମଧ୍ୟ ବେଶ୍ ଲମ୍ୱା ।

ସିଧା ଗଛ ଏବଂ ସିଧା ଅମସୃଣ କାନ୍ଥ ଚଢିଯିବାରେ ସେମାନଙ୍କୁ କୌଣସି ଅସୁବିଧା ହୁଏ ନାହିଁ । ସିଧା ଅବସ୍ଥାରେ ମଧ୍ୟ ସେମାନେ ୩ରୁ ୪ଫୁଟ ଫାଙ୍କ ସ୍ଥାନକୁ ଡେଇଁ ଯାଇ ପାରନ୍ତି । ଏପରିକି ଗଛ ଉପରୁ ଭୂଇଁ ଉପରକୁ ଏବଂ ଗଛର ଏକ ଡାଳକୁ ଅନ୍ୟ ଡାଳକୁ ସେମାନେ ଉଡ଼ିଗଲା ଭଳି ଅତିକ୍ରମ କରିପାରନ୍ତି । ସେଥିପାଇଁ ସେମାନଙ୍କୁ ଉଡ଼ନ୍ତା ସାପ ବୋଲି କୁହାଯାଇଥାଏ ।

ଶିକାର କରିବା ପୂର୍ବରୁ ଗଛ ସାପ ଗଛର ସବା ଉପର ଡାଳକୁ ଉଠି ଯାଏ । ତଳ ଡାଳରେ ଝିଟିପିଟି କି ଏଣ୍ଡୁଅ ଆଖିରେ ପଡ଼ିଲେ ଉଡ଼ିବା ପ୍ରକାରେ ଖସିଆସି ଶିକାରକୁ ପାଟିରେ ଧରିନିଏ । ଶିକାର କରିବାରେ ସେମାନଙ୍କର ତୀକ୍ଷଣ୍ ନଜର ଖୁବ୍ ସାହାଯ୍ୟ କରେ ।

ଉତ୍ତର ଆମେରିକାରେ ଦୃଷ୍ଟିଗୋଚର ହୋଇଥାଆନ୍ତି 'ବିଲେଇ- ଆଖିଆ' ଗଛ ସାପ । ଏହି ଜାତିର ଏକ ସାପ ନିଷିକ୍ତ ଅଣ୍ଡାକୁ ଦୀର୍ଘ ୬ ବର୍ଷଧରି ନିଜ ଶରୀରରେ ଧାରଣ କଲା ପରେ ଅଣ୍ଡା ଦେଇଥିଲା । ଚିଡ଼ିଆଖାନାରେ ରହିଥିବା ଏ ଧରଣର ସାପ ନିଷିକ୍ତ ଅଣ୍ଡାକୁ ମାସାଧିକ କାଳ ଶରୀରରେ ରଖି ପରେ ଅଣ୍ଡା ଦେଉଥିବାର ଦେଖାଯାଉଛି । ତେଣୁ ବିଶ୍ୱାସ କରାଯାଉଛି ଯେ ଏହି ସାପ ଅଣ୍ଡିରା ସାପର ଶୁକ୍ରାଣୁକୁ ଅଧିକ କାଳ ଧରି ଶରୀରରେ ସଂଚୟ କରି ରଖିପାରେ । ଗଛ ସାପମାନେ ଅଣ୍ଡା ଦେଇଥାନ୍ତି- ଏତିକି ତଥ୍ୟ ବ୍ୟତୀତ ସେମାନଙ୍କ ପ୍ରଜନନ ସଂପର୍କରେ ଆମେ ବିଶେଷ କିଛି ଜାଣୁନା । ତେବେ କୁହାଯାଏ ଯେ କେତେକ ଜାତିର ଗଛ ସାପ ପରିବାର ନିୟନ୍ତ୍ରଣ କରିବାର ପନ୍ଥା ଅନୁସରଣ କରିଥାନ୍ତି !

ଗଛ ସାପର ଉଡ଼ନ୍ତା ଆଚରଣକୁ ଦେଖି ଅନେକ ଅନ୍ଧ ବିଶ୍ୱାସ ପ୍ରଚଳିତ ଅଛି । ମାଳୟ ଏବଂ ଇଣ୍ଡୋନେସିଆର ଲୋକେ ବିଶ୍ୱାସ କରନ୍ତି ଯେ ଉଡ଼ିବା ପୂର୍ବରୁ ଗଛ ସାପ ଏକ ପକ୍ଷୀରେ ପରିଣତ ହୋଇଯାଏ ଏବଂ ଉଦ୍ଦିଷ୍ଟ ସ୍ଥଳରେ ପହଞ୍ଚିଯିବା ପରେ ପକ୍ଷୀରୁ ପୁଣି ସାପରେ ପରିଣତ ହୋଇଯାଏ !



# ଘୁଷୁରି ନାକିଆ ସାପ

ଏହି ସାପର ନାକ ଘୁଷୁରି ନାକ ଭଳି ଉପରକୁ ଟେକି ହୋଇ ରହିଥିବାରୁ ତାକୁ ଘୁଷୁରି ନାକିଆ ସାପ ବୋଲି କୁହାଯାଏ । ମୁଣ୍ଡଟି ଛୋଟ କିନ୍ତୁ ଓସାରିଆ । ଲାଞ୍ଜ ଛୋଟ ଏବଂ ଦେହଟି ବେଶ୍ ମୋଟା । ସାପର ରଙ୍ଗରେ ଠିକ୍ ଠିକଣା ନଥାଏ । ସବୁଜ, ବାଦାମୀ, ଧୂସର



ଏବଂ ମାଟିଆ -ସବୁ ପ୍ରକାର ରଙ୍ଗର ସାପ ଦେଖିବାକୁ ମିଳିଥାଏ । ଦେହର ଦୁଇ କଡ଼ରେ ଥାଏ ଗୋଟିଏ ଧାଡ଼ି କଳା ପଟି କିମ୍ବା କଳାଦାଗ । ସାପଟି ଗାଢ ରଙ୍ଗର ହୋଇଥିଲେ ଏହି ପଟି କିମ୍ବା ଦାଗ ସ୍ପଷ୍ଟ ଦେଖାଯାଏ ନାହିଁ । ସାପର ପେଟ ପାଖର ରଙ୍ଗ ଧଳା କିମ୍ବା ଧଳା ପେଟରେ ଥାଏ ବାଦାମୀ ବା ଧୂସର ରଙ୍ଗର ଦାଗ । ତେବେ ଯେଉଁ ମାନେ ଜଙ୍ଗଲରେ ରହନ୍ତି, ସେମାନଙ୍କ ଦେହର ରଙ୍ଗ ଶୁଷ୍କ ବାଲିଆ ଭୂଇଁରେ ରହୁଥିବା ସାପଙ୍କ ତୁଳନାରେ ଅଧିକ ଗାଢ ।

କାନାଡ଼ା, ଫ୍ଲୋରିଡ଼ା ଏବଂ ଟେକ୍ସାସ୍ ଇତ୍ୟାଦି ପୂର୍ବାଞ୍ଚଳରେ ରହୁଥିବା ଘୁଷୁରି ନାକିଆ ସାପଙ୍କର ଲମ୍ବ ୧୮ରୁ ୩୦ ଇଞ୍ଚ ବା ସର୍ବାଧିକ ୪୮ ଇଞ୍ଚ । କିନ୍ତୁ ଆଲବର୍ଟା, କେନ୍ଦ୍ରୀୟ ମେକ୍ସିକୋ ଭଳି ପଶ୍ଚିମାଞ୍ଚଳରେ ରହୁଥିବା ସାପଙ୍କର ଲମ୍ବ ୧୨ରୁ ୨୭ ଇଞ୍ଚ ।

ଘୁଷୁରି ନାକିଆ ସାପଙ୍କର ମୁହଁ ନରମ ମାଟିରେ ଗାତ ଖୋଳିବା ପାଇଁ କୋଦାଳ ଭଳି କାମ କରିଥାଏ । ଏହି ସାପ ଶୁଷ୍କ ବାଲିଆ ଭୂଇଁରେ ରହେ, ରହେ ମଧ୍ୟ ଗଛଲତା ଥିବା ବଗିଚାରେ ଏବଂ ସନ୍ତସନ୍ତିଆ ଜାଗାରେ । ବେଙ୍ଗ ଏହାର ପ୍ରିୟ ଖାଦ୍ୟ । ଛୋଟ ସାପମାନେ ପୋକ ଜୋକ ହୁଏତ ଖାଉଥିବେ । ତେବେ, ମୂଷା, ପକ୍ଷୀ, ଝିଟିପିଟି ଏବଂ ଅନ୍ୟ ସାପକୁ ମଧ୍ୟ ଏହା ଖାଦ୍ୟ ରୂପେ ଗ୍ରହଣ କରିଥାଏ । ଏହି ସାପ ଶିକାରର ମୁଣ୍ଡପଟୁ ଧରି ଗିଳିଥାଏ । ଶିକାରକୁ ଧରିବାରେ ସାହାଯ୍ୟ କରିଥାଏ ପାଟିରେ ଥିବା ଲମ୍ବା ଦାନ୍ତ । କୁହାଯାଏ ଯେ ବେଙ୍ଗକୁ ଧରିଲେ ସାପ କବଳରୁ ରକ୍ଷା ପାଇବା ପାଇଁ ବେଙ୍ଗ ନିଜର ପେଟକୁ ଫୁଲେଇ ଦିଏ । କିନ୍ତୁ ପେଟ ଫୁଲେଇ ଦେବା ଫଳରେ ସାପର ଲମ୍ବ ଦାନ୍ତ ସହଜରେ ବେଙ୍ଗର ଚମଡ଼ାରେ ଫୁଟି ରହି ଶିକାରକୁ କବଳିତ କରି ରଖେ ।

ଘୁଷୁରି ନାକିଆ ସାପ ସନ୍ତସନ୍ତିଆ ଜାଗା ଦେଖି ଅଣ୍ଡା ଦିଏ । ଅଣ୍ଡା ଦେବାର ସମୟ ଜୁନ୍ କିମ୍ବା ଜୁଲାଇ । ଥରକେ ଗୋଟିଏ ମାଈ ସାପ ୧୨ରୁ ୩୦ଟି ପର୍ଯ୍ୟନ୍ତ ଅଣ୍ଡା ଦେଇଥାଏ । ଅଣ୍ଡାର ବିକାଶ ଘଟିବା ସଙ୍ଗେ ସଙ୍ଗେ ଏହା ସ୍ଫୀତ ହୋଇଗଲେ ଓ ଫୁଟିବା ପୂର୍ବରୁ ପ୍ରାୟତଃ ଗୋଲାକାର ହୋଇଯାଏ ।

ଏ ଜାତିର ସାପମାନେ ପ୍ରାୟତଃ ନିର୍ଦ୍ଦୋଷ । ସେମାନେ ବିଶେଷ କ୍ଷତି କରନ୍ତି ନାହିଁ । ତେବେ ଶତ୍ରୁକୁ ଘଉଡ଼େଇବା ପାଇଁ ସେମାନେ ବିଭିନ୍ନ କୌଶଳ ଅବଲମ୍ବନ କରିଥାଆନ୍ତି । ଗୋଟିଏ ପ୍ରକାରର ସାପ ଶତ୍ରୁକୁ ଦେଖି ମଲାଭଳି ପଡ଼ି ରହୁଥିବା ବେଳେ ଅନ୍ୟ କେତେକ ବିଷାକ୍ତ ସାପ ଭଳି ଛଳନା କରିଥାନ୍ତି । ସେମାନେ ନିଜ ଶରୀରକୁ ଫୁଲେଇ ଗୁଡ଼େଇ ହୋଇ ରହନ୍ତି ଓ ହିସ୍ ହିସ୍ ଶବ୍ଦ କରି ଶତ୍ରୁଠାରେ ଭୀତି ସଞ୍ଚାର କରିଥା'ନ୍ତି । ମୁହଁ ବନ୍ଦରଖି ଚୋଟ ମଧ୍ୟ ମାରିଥାନ୍ତି । ଏଭଳି କୌଶଳ କାମ ନ ଦେଲେ ଏହି ସାପ ନିଜକୁ ଓଲଟେଇ ଦେଇ ପେଟପାଖ ଉପରକୁ କରିଦିଏ । ପାଟି ମେଲା ରଖି ଜିଭକୁ ବାହାର କରି ଝୁଲେଇ ରଖେ । ଏପରିକି ମରିଗଲା ଭଳି ଦେହକୁ ଥରେ ଦୁଇ ଥର ଥରେଇ ଦିଏ ।

ଘୁଷୁରି ନାକିଆ ସାପ ବିଷାକ୍ତ ନୁହେଁ । କିନ୍ତୁ ତାର ଲାଳର ସାମାନ୍ୟ ବିଷାକ୍ତ ପ୍ରଭାବ ରହିଛି ବୋଲି କେତେକ ମତ ପୋଷଣ କରିଥାନ୍ତି ।



# ରାଜା ସାପ

ରାଜା ସାପ ଉତ୍ତର ଆମେରିକାର ବାସିନ୍ଦା । ଏହା ବିଷହୀନ ଏବଂ ମଣିଷର କୌଣସି କ୍ଷତି କରି ନଥାଏ । ଏହି ସାପ ଅନ୍ୟ ସାପମାନଙ୍କୁ ଖାଇ ଦେଉଥିବାରୁ ତାର ଏପରି ନାମକରଣ କରାଯାଇଛି । ଏପରିକି ବିଷାକ୍ତ ସାପକୁ ଖାଇ ରାଜା ସାପ ହଜମ କରିଦିଏ । ବିଭିନ୍ନ ରଙ୍ଗର ରାଜା ସାପ ଦେଖାଯାଉଥିବାରୁ ତାର ରଙ୍ଗବେରଙ୍ଗ ଶରୀରକୁ ଦେଖି ମଧ୍ୟ ଏହାର ନାମକରଣ କରାଯାଇଛି ରାଜା ସାପ । ରାଜା ସାପକୁ ଶିକୁଳି ସାପ ବା ଚେନ୍ ସାପ ଏବଂ ଘଡ଼ଘଡ଼ି ସାପ ବା ଥଣ୍ଡର୍ ସାପ ବୋଲି କୁହାଯାଇଥାଏ ।

ସାପଟିର ଲମ୍ବ ପାଖାପାଖି ୬ଫୁଟ । ଦେହଟି ଉଜ୍ଜ୍ୱଳ କୃଷ୍ଣବର୍ଣ୍ଣ । ଦେହସାରା ଛକ ଭଳି ଛାଇ ରହିଥାଏ ଧଳା କି ହଳଦିଆ ପଟି । ପେଟ ପାଖ କଳା ଓ ସେଥିରେ ରହିଥାଏ ଧଳା କି ହଳଦିଆ ଦାଗ । ମୁଣ୍ଡଟି ଗୋଜିଆ । ଗୋଟିଏ ଜାତି ରାଜା ସାପର ଦେହସାରା କଳା, ନାଲି, ହଳଦିଆ ରଙ୍ଗର ମୁଦିଭଳି ଦାଗମାନ ରହିଥାଏ ।



ରାଜା ସାପ ଅପରାହ୍ଣ ଏବଂ ସଂଧ୍ୟା ବେଳେ ସକ୍ରିୟ ହୋଇ ଶିକାର ସନ୍ଧାନରେ ବାହାରେ। ମୂଷା, ଝିଟିପିଟି ଏବଂ ବେଙ୍ଗ ତାର ଆହାର । କିନ୍ତୁ , ବାଟରେ ଅନ୍ୟ ଏକ ସାପ ହାବୁଡ଼େ ପଡ଼ିଗଲେ ତାକୁ ସେ ମଣୋହି କରିଦିଏ । ସେହି ସାପଟିର ବେକକୁ ଦାନ୍ତରେ କାମୁଡ଼ି ଧରି ତା ଚାରିକଡ଼େ ଗୁଡ଼େଇ ହୋଇଯାଏ ଓ ତାକୁ କାବୁକରି ଅଣନିଃଶ୍ୱାସୀ କରେଇ ନିଏ । ଅନ୍ୟ ବିଷାକ୍ତ ସାପର ବିଷ ରାଜା ସାପର କିଛି କ୍ଷତି କରି ପାରେ ନାହିଁ ।

ଉତ୍ତର ଆମେରିକାରେ ରାଜାସାପ ଜାତିର ଅନ୍ୟ ଏକ ପ୍ରକାର ସାପ ରହନ୍ତି । ସେମାନଙ୍କୁ କୁହାଯାଏ– କ୍ଷୀର ସାପ ବା ମିଲ୍କ୍ ସାପ । ଲୋକଙ୍କର ଧାରଣା ଯେ ଏହି ସାପ ଗାଈମାନଙ୍କର ଚିରରୁ କ୍ଷୀର ଚୁଚୁମି ପିଇଥାଏ । କିନ୍ତୁ ଏହି ଧାରଣା ସଂପୂର୍ଣ୍ଣ ଅମୂଳକ ।

ବସନ୍ତ ଋତୁର ପ୍ରାରମ୍ଭରେ ଅଣ୍ଡିରା ଏବଂ ମାଈ ସାପର ମିଳନ ଘଟେ । ମାଈ ସାପ ଥରକୁ ୧୦ରୁ ୩୦ଟି ଅଣ୍ଡା ଦେଇଥାଏ । ଅଣ୍ଡା ଦେଇସାରି ପ୍ରଥମ ଦିନଟି କେବଳ ସେ ଅଣ୍ଡାଗୁଡ଼ିକର ଦେଖାଶୁଣା କରିଥାଏ ସିନା, କିନ୍ତୁ ପତର ଗଦା କି କାଠିକୁଟା ଗଦା ଭିତରେ ସୁରକ୍ଷିତ ରହିଥିବା ଅଣ୍ଡା ଗୁଡ଼ିକୁ ଛାଡ଼ି ଦେଇ ମାଈ ସାପ ଚାଲିଯାଇଥାଏ । ୪ରୁ ୬ ସପ୍ତାହ ପରେ ଅଣ୍ଡା ମନକୁ ମନ ଫୁଟି ୭-୮ ଇଞ୍ଚ ଲମ୍ବର ସାପଛୁଆ ବାହାରି ଥାଏ । ସେମାନଙ୍କର ରଙ୍ଗ ହୋଇଥାଏ ବାପା ମା'ଙ୍କର ରଙ୍ଗ ଭଳି ।

ରାଜା ସାପ ଅନ୍ୟ ରାଜାସାପଙ୍କୁ ଗିଳି ଦେଉଥିବାର ବହୁ ଆଖି ଦେଖା ଘଟଣା ରହିଛି । ଚିଡ଼ିଆଖାନାରେ ମଧ ଏହା ଦେଖିବାକୁ ମିଳିଛି । ସେମାନଙ୍କୁ ଖାଦ୍ୟ ଦେଲେ ଦୁଇଟି ସାପ ଖାଦ୍ୟ ଖାଇବା ପାଇଁ ପାଖକୁ ପାଖକୁ ଚାଲି ଆସନ୍ତି । ସେମାନଙ୍କର ନାକ ପରସ୍ପରକୁ ସ୍ପର୍ଶ କରିବା ମାତ୍ରେ ବଡ଼ ସାପଟି ପାଟି ମେଲା କରି ଛୋଟ ସାପଟିକୁ ଗିଳିବା ଆରମ୍ଭ କରିଦିଏ ।



# ନାଗ

ସାଧାରଣ ନାଗ ସାପ ଭାରତର ସବୁ ସ୍ଥାନରେ ଦେଖିବାକୁ ମିଳନ୍ତି । ଏମାନଙ୍କର ଲମ୍ବ ପାଞ୍ଚରୁ ଛଅ ଫୁଟ । ଏହା ଦେଖିବାକୁ କଳା । ଏମାନଙ୍କର ଫଣା ରହିଛି ଏବଂ ଫଣାରେ ଉପରି ପଟରେ ଥାଏ କଠଉ ଚିହ୍ନ । କଠଉ ଚିହ୍ନ ଗୋଟିଏ ଥାଇପାରେ କିମ୍ବା ଦୁଇଟି ଥାଇପାରେ । ନାଗସାପକୁ ଦେଖିଲେ ତାର ଫଣା ଅଛି ବୋଲି ଜଣା ପଡ଼େ ନାହିଁ । କିନ୍ତୁ ସେ ରାଗିଗଲେ ନିଜର ବେକକୁ ଫଣା ଆକାରରେ ଫୁଲେଇ ଦିଏ । ଏହାଛଡ଼ା ବିପଦ ବାରିଲେ କିମ୍ବା ଚୋଟ ବସେଇବା ପୂର୍ବରୁ ଏହି ସାପ ଫଣା ଟେକିଥାଏ । ମଲା ସାପଠାରେ ଫଣା ଦେଖାଯାଏ ନାହିଁ । କାରଣ ମୃତ ସାପଠାରେ ବେକ ଏବଂ ଗଣ୍ଡିମାନ ଟାଣ ହୋଇଯାଇଥାନ୍ତି । ସାପ ମୁଣ୍ଡର କାତି ଏବଂ କାଳା ଦାଗ ଦେଖି ନାଗସାପ ଚହ୍ନି ହୁଏ । ନାଗ ସାପର ବିଷ ଅଛି ।

# ଅହିରାଜ ବା ତମ୍ପ

ଅହିରାଜ ବା ତମ୍ପ ମଧ ନାଗ ବା ଗୋଖର ଜାତୀୟ ସାପ । ଭାରତର ଓଡ଼ିଶା, ବଙ୍ଗଳା, ଆସାମ ଇତ୍ୟାଦି ରାଜ୍ୟରେ ଏମାନଙ୍କୁ ଦେଖିବାକୁ ମିଳେ । ଅହିରାଜ ସାଧାରଣ ନାଗ ସାପଠାରୁ ବେଶୀ ଲମ୍ବା । ଏହାର ଲମ୍ବ ୮ରୁ ୧୨ ଫୁଟ ପର୍ଯ୍ୟନ୍ତ ହୋଇଥାଏ । ଅହିରାଜର ମଧ ଫଣା ଅଛି । କିନ୍ତୁ ଫଣାରେ କଠଉ ଚିହ୍ନ ନଥାଏ ।

ଅଳ୍ପ ବୟସ୍କ ଅହିରାଜ ରଙ୍ଗ ଗାଢ଼ କଳା । ଦେହସାରା ଧଳା କିମ୍ବା ହଳଦିଆ ରଙ୍ଗର ପଟି । ବୟସ୍କ ଅହିରାଜ ବା ତମ୍ପ ଦେଖିବାକୁ ହଳଦିଆ, ଶାଗୁଆ, ବାଦାମୀ କିମ୍ବା କଳା ରଙ୍ଗର ହୋଇପାରେ । ଅହିରାଜ ଏକ ବିଷାକ୍ତ ସାପ ।

ନାଗ ସାପ ଏବଂ ତମ୍ପ ବା ଅହିରାଜ ବିଷ ସ୍ନାୟୁତନ୍ତ୍ର ଉପରେ ପ୍ରତିକୂଳ ପ୍ରଭାବ ପକାଇ ଥାଏ । ବ୍ୟକ୍ତିର ମୃତ୍ୟୁ ଘଟାଇବା ପାଇଁ ୧୫ ମିଲିଗ୍ରାମ୍ ପରିମାଣର ଶୁଷ ବିଷ ଯଥେଷ୍ଟ । ମାତ୍ର ଅଳ୍ପ କେଇ ମିନିଟ୍‌ରୁ ଆରମ୍ଭ କରି କିଛି ଘଣ୍ଟା ମଧରେ ସାପକାମୁଡ଼ା ରୋଗୀ ମରି ଯାଇପାରେ ।

# ଚିତି ସାପ

ଚିତି ସାପ ବିଷାକ୍ତ ସାପ ଗୋଷ୍ଠୀର ଅନ୍ତର୍ଭୁକ୍ତ । ଚିତି ସାପ ସାରା ଭାରତରେ ଦେଖିବାକୁ ମିଳନ୍ତି । ଏଗୁଡ଼ିକର ଲମ୍ବ ୩ରୁ ୫ଫୁଟ ପର୍ଯ୍ୟନ୍ତ ହୋଇପାରେ । ଦେହର ରଙ୍ଗ ଉଜ୍ଜ୍ୱଳ କଳା । ପିଠିରେ ଗୋଟି ଗୋଟିକିଆ କିମ୍ବା ଦୁଇ ଦୁଇଟି ତୋରଣ ଭଳି ପଟି । ପେଟଟା ହଳଦିଆସିଆ ଧଳା । ଅନ୍ୟ ଏକ ପ୍ରକାରର ଚିତି ସାପ ୬ରୁ ୭ ଫୁଟ ପର୍ଯ୍ୟନ୍ତ ଲମ୍ବା ହୋଇଥାନ୍ତି । ଏମାନଙ୍କର ଦେହରେ ଗାଢ଼ କଳା ଏବଂ ଗାଢ଼ ହଳଦିଆ ରଙ୍ଗର ପଟି ଗୋଟିକ ପରେ ଗୋଟିଏ ହୋଇ ରହିଥାଏ । ଚିତି ସାପ ଓ ରଣା ସାପର ବିଷ ସ୍ନାୟୁପ୍ରଣାଳୀ ଉପରେ କ୍ଷତିକାରୀ ପ୍ରଭାବ ପକାଇଥାଏ । ପ୍ରାୟ ୨-୬ ମିଲିଗ୍ରାମ୍ ପରିମାଣର ଶୁଷ ଚିତି ବିଷ ରୋଗୀର ମୃତ୍ୟୁ ଘଟାଇଥାଏ ।

# ବୋଡ଼ା

ବୋଡ଼ା ସାପ ବିଷାକ୍ତ । ଆମ ଦେଶରେ ଚନ୍ଦନ ବୋଡ଼ା ବା ରସେଲ୍ ବୋଡ଼ାମାନେ ଦେଖିବାକୁ ମିଳନ୍ତି । ଏମାନଙ୍କର ଲମ୍ବ ୪ରୁ ସାଢେ ପାଞ୍ଚ ଫୁଟ । ଦେହର ରଙ୍ଗ ଫିକା ବାଦାମୀ । ଭାରତରେ ଦେଖାଯାଉଥିବା ବିଷାକ୍ତ ସାପ ଗୁଡ଼ିକ ମଧ୍ୟରେ ଏହା ସବୁଠାରୁ ମୋଟା । ଏହାର ମୁଣ୍ଡ ଚେପଟା ତ୍ରିଭୁଜାକୃତି ଏବଂ ଓଜନିଆ । ମୁଣ୍ଡରେ ଥାଏ ଇଂରାଜୀ ଅକ୍ଷର ' V ' (ଭି) ଭଳି ଦାଗଟିଏ । ଏହି 'ଭି'ର ଗୋଳିଆ ପଟଟି ପଟକୁ ରହିଥାଏ । ବୋଡ଼ାର ନାକ ପୁଡ଼ା ଦୁଇଟି ବଡ଼ । ଶିକାରକୁ ଆକ୍ରମଣ କଲାବେଳେ ଏହା ଭୟଙ୍କର ଭାବରେ ଶବ୍ଦ କରିଥାଏ ।

ଭାରତର କାଶ୍ମୀର, ମହାରାଷ୍ଟ୍ର, ଗୁଜୁରାଟ, ରାଜସ୍ଥାନ ଏବଂ ଅନ୍ୟାନ୍ୟ ଅଞ୍ଚଳରେ ଗର୍ତମସ୍ତକୀ ବୋଡ଼ାମାନଙ୍କୁ ଦେଖିବାକୁ ମିଳିଥାଏ । ଏହାର ଲମ୍ବ ପ୍ରାୟ ଦେଢ ଫୁଟ । ଶରୀରର ରଙ୍ଗ ବାଦାମୀ କିମ୍ବା ବାଦାମୀ ମିଶା ଧୂସର । ଏହାର ମୁଣ୍ଡ ତ୍ରିଭୁଜାକୃତି ଓ ଦୁଇ ଆଖିର ମଝିଆ ମଝି ସ୍ଥାନରେ ରହିଥାଏ ଏକ ଛୋଟ ଗାତ ।

ଚନ୍ଦ୍ରବୋଡ଼ା ଏବଂ ଗର୍ତମସ୍ତକୀ ବୋଡ଼ାର ବିଷ ରକ୍ତ କୋଷ ଏବଂ ରକ୍ତରେ ଥିବା ଉପାଦାନଗୁଡ଼ିକ ପ୍ରତି ଅନିଷ୍ଟକର । ୪୦ ମିଲିଗ୍ରାମ୍ ପରିମାଣର ଶୁଷ୍କ ବୋଡ଼ା ବିଷ ରୋଗୀର ମୃତ୍ୟୁ ଘଟାଇବା ପାଇଁ ଯଥେଷ୍ଟ ହେଲେ ମଧ୍ୟ ସାପ କାମୁଡ଼ିବାରେ ଅଳ୍ପ କିଛି ଦିନ ମଧ୍ୟରେ ରୋଗୀର ମୃତ୍ୟୁ ହୋଇଥାଏ ।

# ସମୁଦ୍ର ସାପ

ସମୁଦ୍ର ସାପମାନେ ଏକଦା ଥିଲେ ସ୍ଥଳବାସୀ । ପରେ ସେମାନେ ସ୍ଥଳ ଭାଗରୁ ସମୁଦ୍ର ଭିତରକୁ ଚାଲିଗଲେ ଏବଂ ସମୁଦ୍ର ପରିବେଶକୁ ଆଦରି ନେଲେ । ଏମାନଙ୍କର ଶରୀର ପ୍ରାୟତଃ ଚେପଟା ଏବଂ ଲାଞ୍ଜ ଚେପଟା ତଥା ଆହୁଲାକୃତି । ତେଣୁ ଜଳରେ ପହଁରିବାରେ ସେମାନଙ୍କ ପାଇଁ ସମସ୍ୟା ହୁଏ ନାହିଁ । ସମୁଦ୍ର ସାପଗୁଡ଼ିକର ଆଖି ଛୋଟ ଏବଂ ନାକପୁଡ଼ା ବଡ଼ । ନାକପୁଡ଼ା ଦେଖିବାକୁ ଭାଲ୍ଭ ବା କପାଟିକା ଭଳି । ନିଶ୍ୱାସ ପ୍ରଶ୍ୱାସ ପାଇଁ ଏହା ବାୟୁ ଉପରେ ନିର୍ଭର କରିଥାଏ । ତେଣୁ ଏହାକୁ ଜଳରେ ବୁଡ଼େଇ ରଖିଲେ ନିଶ୍ୱାସ ନେଇ ନପାରି ଏହା ବୁଡ଼ି ମରିଯାଏ ।

ଅଧିକାଂଶ ସମୁଦ୍ର ସାପର ଲମ୍ବ ୪ରୁ ୫ ଫୁଟ ହୋଇଥିଲେ ମଧ୍ୟ ୮, ୯ ଏବଂ ୧୦ ଫୁଟ ଲମ୍ବର ସମୁଦ୍ର ସାପ ମଧ୍ୟ ବିରଳ ନୁହନ୍ତି । ପ୍ରାୟ ୫୦ ଜାତିର ସମୁଦ୍ର ସାପ ମଧ୍ୟରୁ ଭାରତରେ ଦେଖାଯାଆନ୍ତି ୨୦ ଜାତିର ସମୁଦ୍ର ସାପ । ସେଗୁଡ଼ିକ ଦେଖିବାକୁ କଳା, ଶାଗୁଆସିଆ କଳା କିମ୍ବା ନେଳିଆସିଆ କଳା । କାହା କାହା ଦେହରେ ପଟିଥାଏ ତ କାହା ଠାରେ ପଟି ନଥାଏ । ଭାରତ ମହାସାଗର ଏବଂ ପ୍ରଶାନ୍ତ ମହାସାଗରରେ ଏମାନଙ୍କୁ ଅଧିକ ସଂଖ୍ୟାରେ ଦେଖିବାକୁ ମିଳେ ।

ସମୁଦ୍ର ସାପ ମାତ୍ରକେ ବିଷାକ୍ତ । ଏହି ବିଷ ସ୍ନାୟୁ ପ୍ରଣାଳୀ, ଶ୍ୱାସ ପ୍ରଣାଳୀ ଏବଂ ମାଂସପେଶୀକୁ ମୁଖ୍ୟତଃ ଆକ୍ରାନ୍ତ କରିଥାଏ । ସେମାନଙ୍କ ଆଖି ତଳକୁ ଥାଏ ବିଷଗ୍ରନ୍ଥି । ବିଷଦାନ୍ତ ଛୋଟ, ପୋଲା ଏବଂ ସିଧା । ସମୁଦ୍ର ଭିତରେ ଏମାନେ ଖୁବ୍ ଜୋର୍‌ରେ ପହଁରି ପାରନ୍ତି ଏବଂ ପ୍ରାୟତଃ ରାତି ବେଳା ଶିକାର କରିଥା'ନ୍ତି । ସେମାନଙ୍କର ବିଷ ଖୁବ୍ ଉଗ୍ର ହୋଇଥିବାରୁ ଅତି ଅଳ୍ପ ସମୟ ଭିତରେ ଶିକାରର ମୃତ୍ୟୁ ହୋଇଥାଏ । ଏମାନେ ଛୋଟ ଛୋଟ ମାଛ ଶିକାର କରି ଖାଇଥାନ୍ତି ।

ସମୁଦ୍ର ସାପମାନେ ବେଳେବେଳେ ବିରାଟ ବିରାଟ ଦଳ ବାନ୍ଧି ସମୁଦ୍ରରେ ପହଁରୁଥିବାର ଦେଖାଯାଏ । ମାଲାକ୍କା ପ୍ରଣାଳୀରେ ଦୀର୍ଘ ୯୦ କିଲୋମିଟର ଧରି ସମୁଦ୍ର ସାପଙ୍କର ଏକ ମେଳା ଦେଖିବାକୁ ପାଇଥିଲେ ଏଚ୍. ଡବ୍ଲ୍ୟୁ. ପାର୍କର । ହୁଏତ ସେତେବେଳେ ସେମାନଙ୍କର ପ୍ରଜନନ ସମୟ ହୋଇଥିବ । ପ୍ରଜନନ ସମୟରେ ସେମାନେ ଖୁବ୍ ହିଂସ୍ର ହୋଇ ଉଠୁଥିବାର ଜଣାଯାଇଛି ।

ଗୋଟିଏ ଗୋଟିଏ ଜାତି ଛୁଆ ଜନ୍ମ କରୁଥିଲେ ମଧ୍ୟ ଅନ୍ୟ କେତେକ ସ୍ଥଳ ଭାଗରେ ଅଣ୍ଡାଦେଇ ବଂଶବୃଦ୍ଧି କରିଥାନ୍ତି ।

ତେବେ, ସ୍ଥଳ ଭାଗରେ ଏମାନଙ୍କଠାରୁ ବିଶେଷ ବିପଦର ସମ୍ଭାବନା ନଥାଏ, ସମୁଦ୍ରରେ ସନ୍ତରଣ କରୁଥିବା ତଥା ମାଛ ଧରୁଥିବା ବ୍ୟକ୍ତି ସମୁଦ୍ର ସାପ କାମୁଡ଼ା ଦ୍ୱାରା ଆକ୍ରାନ୍ତ ହେବାର ସମ୍ଭାବନା ଥାଏ । ମାଛ ଧରାଳିମାନଙ୍କ ଜାଲରେ ଏମାନେ ଧରାପଡ଼ିଥାନ୍ତି ଏବଂ ଜାଲରୁ ମୁକୁଳେଇବା ସମୟରେ ମାଛ ଧରାଳିମାନଙ୍କୁ କାମୁଡ଼ି ଥାଆନ୍ତି । ପ୍ରାୟତଃ ନିଷ୍କ୍ରିୟ ଜାତିର ହୋଇଥିବାରୁ କାମୁଡ଼ିବା ଏମାନଙ୍କର ସ୍ୱାଭାବିକ ପ୍ରବୃତ୍ତି ନୁହେଁ । ତାହା ଛଡ଼ା ଜଳରେ ଥାଇ କାମୁଡୁଥିବାରୁ ବିଷ ଜଳରେ ଧୋଇ ହୋଇ ଶିକାର ଶରୀରକୁ କମ୍ ବିଷ ପ୍ରବେଶ କରିଥାଏ । ଫଳରେ ବିଷଜନିତ ଅପକ୍ରିୟା ବିଶେଷ ମାରାତ୍ମକ ହୁଏ ନାହିଁ ।

ସମୁଦ୍ର ସାପ କାମୁଡ଼ିଲେ ଯନ୍ତ୍ରଣା ହୁଏ ନାହିଁ । ବିଷ ଖୁବ୍ ମନ୍ଥର ଭାବରେ କ୍ରିୟା କରିଥାଏ । ତେଣୁ, ମଣିଷ ପାଇଁ ଏମାନେ ବିଶେଷ ସମସ୍ୟା ସୃଷ୍ଟି କରନ୍ତି ନାହିଁ ।

ସମୁଦ୍ର ସାପର ଚମଡ଼ା ବେଶ୍ ଭଲ । ତେଣୁ ଚମଡ଼ା ଲୋଭରେ ଲୋକେ ଏହି ସାପକୁ ଶିକାର କରଥାନ୍ତି । ଏହି ସାପର ମାଂସ କାମ ଉତ୍ତେଜକ ବୋଲି ଧାରଣା ରହିଛି । ଫଳରେ ସମୁଦ୍ର ସାପ ପ୍ରତି ବିପଦ ସୃଷ୍ଟି ହେଉଛି । ଜାପାନ ସମୁଦ୍ର ସାପ ମାଂସ ଏକ ସୁସ୍ୱାଦୁ ଖାଦ୍ୟ ରୂପେ ବିବେଚିତ ହୋଇଥାଏ ।

ସମୁଦ୍ର ସାପକୁ ନେଇ ଧୀବର ସମ୍ପ୍ରଦାୟରେ ପ୍ରଚଳିତ ରହିଛି ଅନେକ ଅନ୍ଧବିଶ୍ୱାସ ।



# କେତେ ସତ, କେତେ ମିଛ ?

## ନାଗ ସାପ ଲୋକ ଚିହ୍ନି ପାରି ପ୍ରତିଶୋଧ ନିଏ କି ?

ନାଗ ଜାତୀୟ ସାପମାନେ ଜାଣିଶୁଣି କାହାକୁ କାମୁଡ଼ନ୍ତି ନାହିଁ । ସାପ ଯାଉଥିଲା ବେଳେ ତା' ଉପରେ ଅଜାଣତରେ ଗୋଡ଼ ପଡ଼ିଗଲେ କି ତା'ର ସ୍ୱାଭାବିକ ଶାନ୍ତି ବ୍ୟାହତ ହେଲେ ସେ କାମୁଡ଼ିଦିଏ । ବରଂ ନିଜକୁ ରକ୍ଷା କରିବା ପାଇଁ ସାପ ଏପରି ପ୍ରତିକ୍ରିୟା ପ୍ରକାଶ କରିଥାଏ । ଲୋକଙ୍କର ଧାରଣା ଯେ, ସାପମାନଙ୍କୁ ଦରମରା କରି ଛାଡ଼ି ଦେଲେ ସେମାନେ ଆଖପାଖରେ ଛପି ରହି ପରେ ସୁବିଧା ଦେଖି ପ୍ରତିଶୋଧ ନେଇଥାନ୍ତି । ସାପ ହେଉ କି ଯେ କୌଣସି ପ୍ରାଣୀ ହେଉ, ତା' ଉପରେ ଆଘାତ ଲାଗିଲେ ସେ ନିଜ ପ୍ରାଣ ବଞ୍ଚେଇବା ନିମନ୍ତେ ପଳେଇ ଯାଇ ଆଖପାଖରେ କେଉଁଠି ଲୁଚିଯିବା ତ ସ୍ୱାଭାବିକ ! ତାକୁ ଆଘାତ କରିଥିବା ଲୋକ ଉକ୍ତ ସ୍ଥଳରୁ ଚାଲିଗଲା ପରେ ସାପ ନିଜର ଲୁଚିଥିବା ଜାଗାରୁ ବାହାରି ଇଚ୍ଛାମତେ ଚାଲିଯାଏ । ତେବେ ନାଗ, ତମ୍ପ ଆଦି ସାପମାନଙ୍କ କଥା ଟିକିଏ ଅଲଗା । ସେମାନେ ମାଡ଼ ପାଇଥିଲେ ରାଗରେ ରକ୍ତଚାଉଳ ଚୋବେଇ ହେଉଥାନ୍ତି । କ୍ରୋଧରେ ଫଁ ଫଁ ହେଉଥାନ୍ତି । ତେଣୁ ସେମାନେ ଯେଉଁଠି ଲୁଚି ରହିଥାନ୍ତି, ସେହି ବାଟ ଦେଇ ମଣିଷ ଯାଉ, ଗାଈଗୋରୁ କି ଛେଳି ମେଣ୍ଢା ଯାଆନ୍ତୁ, ଏପରିକି ସାଇକଲ କିମ୍ବା ଗାଡ଼ିମଟର ଯାଉ, କିଛି ବାଛବିଚାର ନ ରଖି ତାହା ଉପରେ ଆକ୍ରମଣ କରିଥା'ନ୍ତି । ତାକୁ ହଇରାଣ ହରକତ କରିଥିବା ଲୋକକୁ ଚିହ୍ନି ନାଗ ସାପ ପ୍ରତିଶୋଧ ନେଉଥିବା ଏକ ଭୁଲ୍ ଧାରଣା । ଦେଖାଯାଇଛି ଯେ ନାଗ କିମ୍ବା ତମ୍ପ ସାପକୁ ବାଡ଼େଇଲା ବେଳେ ସେ ଯଦି ବର୍ତ୍ତିଯାଏ, ତେବେ ପ୍ରାୟତଃ ୩୦ ମିଟର ଦୂରତା ଭିତରେ କେଉଁଠି ଲୁଚି ରହିଥାଏ । ନାଗ ଆଉ ତମ୍ପ ସାପର ମସ୍ତିଷ୍କ ଅନ୍ୟ ସାପମାନଙ୍କ ଠାରୁ ଅପେକ୍ଷାକୃତ ଅଧିକ ବିକାଶ ଲାଭ କରିଥିବାରୁ ସେମାନେ ନିଜର କ୍ରୋଧ ପ୍ରକାଶ କରିବାକୁ ସମର୍ଥ ହୋଇପାରନ୍ତି ।

## ନାଗସାପ କ'ଣ ଧନସମ୍ପତ୍ତି ଜଗିପାରେ ?

ଲୋକମାନଙ୍କର ବିଶ୍ୱାସ ଯେ ପୁରୁଣାକାଳିଆ ଧନୀ ଲୋକମାନେ ସେମାନଙ୍କର ସୁନା, ରୂପା ଟଙ୍କାପଇସା ଆଦି ସାଇତି ରଖିଥିବା ଭଣ୍ଡାରଘରେ ନାଗସାପ ପୋଷିଥାନ୍ତି । ନାଗ ପହରା ଦେଇ କୁଆଡ଼େ ଧନସମ୍ପତ୍ତିକୁ ବିଶ୍ୱସ୍ତ ଭାବରେ ଜଗିଥାଏ । ତେଣୁ ଚୋର ଭୟ ରହେନାହିଁ । କିନ୍ତୁ ସାପର ଧନସମ୍ପତ୍ତି ପ୍ରତି କୌଣସି ଆସକ୍ତି ନ ଥାଏ କି ତା'ର

ବିଶ୍ୱସ୍ତପଣିଆ ମଧ ପ୍ରମାଣିତ ହୋଇ ପାରିନାହିଁ । ଆଗକାଳରେ ଲୋକେ ସାଧାରଣତଃ ଭୂଇଁତଳ ଘରେ କିମ୍ବା ଅନ୍ଧାରିଆ କଣ ଘରେ ଧାନଚାଉଳ ଓ ଅନ୍ୟ ମୂଲ୍ୟବାନ ଧନସମ୍ପତ୍ତି ସାଇତି ରଖୁଥିଲେ । ସେଭଳି ଘରକୁ ବିଶେଷ ଗତାଗତ ନ ଥିବ, ଘରେ ହୁଏତ ଝରକା ନ ଥିବ କି ଘର ଭିତରେ ଆଲୁଅ ପଡୁ ନଥିବ । ତେଣୁ ତାହା ମୂଷା ମାନଙ୍କର ଆଡ୍‌ଡାସ୍ଥଳୀ ହେବାରେ କିଛି ବିଚିତ୍ରତା ନାହିଁ । ମୂଷା ହେଉଛି ସାପର ପ୍ରିୟ ଖାଦ୍ୟ । ତା' ଛଡ଼ା ଅନ୍ୟ ସାପମାନଙ୍କ ଅପେକ୍ଷା ନାଗ ଟିକିଏ ଶାନ୍ତ ବାତାବରଣ ଅଧିକ ଭଲପାଏ । ଥରେ ଗନ୍ତାଘରେ ପଶି ସହଜରେ ମୂଷା ଖାଇବାକୁ ପାଇଥିଲେ ନାଗ ସେ ଘରେ ନିୟମିତ ପଶିବାକୁ ପସନ୍ଦ କରିବା ସ୍ୱାଭାବିକ । ନାଗସାପ ଦେହରୁ ଏକ ବିଚିତ୍ର ଗନ୍ଧ ବାହାରେ । ଏହି ଗନ୍ଧ ଅନ୍ୟ ସାପମାନଙ୍କର ସହ୍ୟ ହୁଏନାହିଁ । ତେଣୁ ନାଗସାପ ରହିଥିଲେ ସେ ସ୍ଥାନକୁ ଅନ୍ୟ ସାପ ଯିବାର ପ୍ରଶ୍ନ ଉଠୁନାହିଁ । ଏହି କାରଣରୁ ହୁଏତ ଭଣ୍ଡାରଘରେ ନାଗ ଦେଖି ନାଗ ଧନସମ୍ପତ୍ତି ଜଗିଛି ବୋଲି ଲୋକେ ଧରିନେଇଥାନ୍ତି ।

## କାମୁଡ଼ି ସାରିଲାପରେ ବୋଡ଼ା ସାପ ମୁହଁ ବୁଲେଇ କାମୁଡ଼ିଥିବା ଲୋକକୁ ଚାହିଁ ଥାଏ କି ?

ସାପ କାମୁଡ଼ିଲେ ତା'ର ବିଷଗ୍ରନ୍ଥି ମାଂସପେଶୀର କ୍ରିୟା ଦ୍ୱାରା ଚିପି ହୋଇଯାଏ ଓ ପୋଲା ବିଷଦାନ୍ତ ଦେଇ ବିଷ ଲୋକ ଦେହରେ ପ୍ରବେଶ କରେ । ନାଗ, ତମ୍ପ ଓ ଚିତି ସାପର ବିଷଦାନ୍ତ ଅପେକ୍ଷା ସାଧାରଣ ବୋଡ଼ା ସାପର ଦାନ୍ତ ବଡ଼ ଓ ବେଶୀ ବଙ୍କା । ତେଣୁ ବୋଡ଼ା କାମୁଡ଼ିଲେ ତାର ବିଷଦାନ୍ତ ଅଧିକ ଗଭୀରକୁ ପଶିଯାଏ । ବେଶୀ ବଙ୍କା ହୋଇଥିବାରୁ କାମୁଡ଼ିସାରି ବୋଡ଼ା ସାପ ଖାଲି ପାଟି ମେଲା କରିଦେଲେ ବି ଦାନ୍ତ ସହଜରେ ବାହାରି ଆସିପାରେ ନାହିଁ । ତେଣୁ ବଙ୍କା ଦାନ୍ତକୁ ବାହାର କରିବା ପାଇଁ ବୋଡ଼ା ସାପ ତାର ମୁଣ୍ଡକୁ ଉପରମୁହାଁ କରି ଉଠାଇ ଦିଏ । ଫଳରେ ଦାନ୍ତ ବାହାରି ଆସିବାର ସୁବିଧା ହୋଇଥାଏ । ଏହାକୁ ଲକ୍ଷ୍ୟ କରି ଲୋକେ ହୁଏତ ଭାବନ୍ତି ଯେ କାମୁଡ଼ା ବିଷୟରେ ନିଶ୍ଚିତ ହେବା ଲାଗି ବୋଡ଼ାସାପ କାମୁଡ଼ିଥିବା ଲୋକଙ୍କୁ ମୁଣ୍ଡ ଉଠାଇ ଚାହିଁଥାଏ ।

## ସାପ କ୍ଷୀର ପିଏ କାହିଁକି ?

ସାପ ଘରେ କ୍ଷୀର ଆସିବ କେଉଁଠୁ ? ତେଣୁ ତା'ରନିତିଦିନିଆ ଖାଦ୍ୟପେୟରେ କ୍ଷୀରର ସ୍ଥାନ ନାହିଁ ? କ୍ଷୀର ପ୍ରତି ତାର ରୁଚି ଅରୁଚିର ପ୍ରଶ୍ନ ଅବା ଉଠୁଛି କୁଆଡୁ ? କିନ୍ତୁ ସାପକୁ ପେଡ଼ିରେ ବନ୍ଦ କରି ରଖି କିଛିଦିନ ପାଇଁ ତା'କୁ ଖାଇବା ପିଇବାକୁ ନ ଦେଲେ ସେ ତ ଖାଇବା ପାଇଁ ଆକୁଳ ହେଉଥିବ । ତେଣୁ ଉପାସିଆ ଅବସ୍ଥାରେ ତାକୁ ପାଣି ଦିଅ କି

କ୍ଷୀର ଦିଅ, ତା'ର କୌଣସି ବାଛବିଚାର ନ କରି ଯାହା ମିଳିଲା ତାକୁ ସେ ଢକଢକ କରି ପିଇଯିବ । ''ସାପ କ୍ଷୀର ପିଇବାକୁ ଭଲ ପାଏ'' – ଲୋକଙ୍କ ମନରେ ଏଭଳି ଧାରଣା ଜନ୍ମାଇବାରେ ବୋଧହୁଏ ସାପୁଆ କେଳାମାନଙ୍କର ଭୂମିକା ବେଶୀ । ଖେଳେଇବାକୁ ନେବା ପୂର୍ବରୁ ସେମାନେ ହୁଏତ ସାପକୁ ଖାଦ୍ୟ ଆଉ ଜଳ ନ ଦେଇ ଉପାସ ରଖିଥିବେ । ସାପ ଖେଳ ଦେଖାଇବା ବେଳେ ''ସାପ କ୍ଷୀର ପିଇବ'' ବୋଲି କହି ଦର୍ଶକମାନଙ୍କ ଘରୁ କ୍ଷୀର ମଗାଇ ସାପ ଆଗରେ ରଖିଦେଲେ ଭୋକିଲା ଓ ଶୋଷିଲା ସାପ ଆଗ୍ରହରେ କ୍ଷୀର ପିଇନେବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ନାଗପଞ୍ଚମୀ ଦିନ ତ ସାପପୂଜା କରାଯାଏ । ତେଣୁ ଭକ୍ତମାନଙ୍କ ମନସ୍ତତ୍ତ୍ୱର ପୂରା ଫାଇଦା ଉଠାଏ ସାପୁଆ କେଳା । ଭକ୍ତମାନଙ୍କ ପ୍ରଦତ୍ତ କ୍ଷୀରରେ ସାପର ପେଟ ପୂରେଇ ଭକ୍ତମାନଙ୍କୁ ସନ୍ତୋଷ ପ୍ରଦାନ କରିବାରେ ଏହା ହୁଏତ ସାପୁଆକେଳାର ଫନ୍ଦି ।

## ଚରିବାକୁ ଯାଇଥିବା ଗାଈର ପହ୍ନାରୁ କଣ ସାପ କ୍ଷୀର ପିଇଯାଏ ?

କେତେକ ଲୋକଙ୍କର ଧାରଣା ଯେ ବଣବୁଦାରେ ଚରୁଥିବା ଦୁହାଁଳିଆ ଗାଈର ପହ୍ନାରେ ମୁହଁ ଲଗେଇ ଚିରକୁ ପ୍ରାଟିରେ ପୂରେଇ ସାପ କ୍ଷୀର ପିଇଯାଏ । ଏଥିରେ ଆଦୌ ସତ୍ୟତା ନାହିଁ । ସାପମାନେ ଯଦି କ୍ଷୀର ଚୋରେଇ ପିଇଯାଉଥାନ୍ତେ, ବାହାରେ ଚରୁଥିବା ଗାଈର ପହ୍ନାରେ ସଞ୍ଜବେଳକୁ କ୍ଷୀର ଝରନ୍ତା କୁଆଡୁ ? ଘାସ ଚରୁଚରୁ ଗାଈର ଗୋଡ଼ ହଠାତ୍ ସାପ ଉପରେ ପଡ଼ିଗଲେ ସାପ୍‌ ଗାଈର ପଛ ଗୋଡ଼ରେ ଗୁଡ଼େଇ ହୋଇ ହୁଏତ ଚିରକୁ ଚୋଟ ମାରୁଥିବ । ପହ୍ନାର ଚିର ପାଖରେ ସାପଦାନ୍ତର ଚିହ୍ନ ଦେଖି ସାପ ଗାଈ ପହ୍ନାରୁ ଖୀର ପିଇଯାଇଛି ବୋଲି ଲୋକେ ଭୁଲରେ ଧାରଣା କରୁଥିବେ ।

## ମନ୍ତ୍ରଦ୍ୱାରା ସାପକାମୁଡ଼ା ରୋଗୀ ଭଲ ହୋଇପାରେ କି ?

ଗାଁ ଗହଳରେ କାହାକୁ ସାପ କାମୁଡ଼ିଲେ ଲୋକେ ହଠାତ୍ ଗୁଣିଆ ଘରକୁ ଦୌଡ଼ନ୍ତି । ଗୁଣିଆ ମନ୍ତ୍ର ବୋଲି ବହୁତ ଝଡ଼ାଫୁଙ୍କା କରେ । କୁଢ଼କୁଢ଼ ସାପକାମୁଡ଼ା ରୋଗୀକୁ ଭଲ କରିଦେଇଛି ବୋଲି ସେ ବାହାସ୍ଫୋଟ ମାରେ । ସେ କୁଆଡ଼େ ବିଷହରଣ କରିନିଏ, ବିଷ ଉଡ଼େଇ ଦିଏ, ମନ୍ତ୍ରବଳରେ ସାପକୁ ଡକେଇ ଆଣି ବିଷ ଶୋଷିନେବାକୁ ବାଧ କରେ ! ଏମିତି କେତେ କ'ଣ ଯେ ଗୁଣିଆମାନଙ୍କ ବିଷୟରେ ଶୁଣାଯାଏ, ତାର ଇୟତ୍ତା ନାହିଁ । କିନ୍ତୁ ମନ୍ତ୍ରଦ୍ୱାରା ବିଷାକ୍ତ ସାପ କାମୁଡ଼ିଥିବା ରୋଗୀ ଭଲ ହେବାର ପ୍ରାମାଣିକ ତଥ୍ୟ ନାହିଁ । ଯେଉଁ କେତେକ କ୍ଷେତ୍ରରେ ଗୁଣିଆମାନେ ସାପକାମୁଡ଼ା ରୋଗୀକୁ ଭଲ କରିଦେବାର ଦୃଷ୍ଟାନ୍ତ ରହିଛି, ସେପରି କ୍ଷେତ୍ରରେ ହୁଏତ କାମୁଡ଼ିଥିବା ସାପ ବିଷାକ୍ତ ହୋଇ ନଥିବ କିମ୍ବା ବିଷାକ୍ତ ସାପ କାମୁଡ଼ିଥିଲେ ମଧ୍ୟ ଖୁବ୍ କମ୍ ପରିମାଣର ବିଷ ରୋଗୀ ଦେହରେ ପ୍ରବେଶ କରିଥିବ । ସାରା ପୃଥିବୀରେ ରହିଛନ୍ତି ପ୍ରାୟ ୨୫୦୦ ଜାତିର ସାପ

ଓ ସେମାନଙ୍କ ମଧ୍ୟରୁ ପାଖାପାଖି ୪୦୦ ଜାତିର ସାପ ବିଷାକ୍ତ । ଅଧିକାଂଶ ସାପଙ୍କର ବିଷ ନ ଥିବାରୁ ଅଧିକାଂଶ ସାପକାମୁଡ଼ା ରୋଗୀଙ୍କୁ ବିଷ ନ ଥିବା ସାପ ହିଁ କାମୁଡ଼ିଥାଏ । କିନ୍ତୁ ସାପକାମୁଡ଼ା ପ୍ରତି ଆମର ଏତେ ଭୟ ଯେ, କାହାକୁ ସାପ କାମୁଡ଼ିଲେ ସେ ନିଜେ ମରିଯିବ ବୋଲି ଭାବି ଛାନିଆ ହୋଇପଡ଼େ ଓ ହଠାତ୍ ଭୟ ପାଇ ମରିଯାଇଥାଏ । ଗୁଣିଆ ହୁଏତ ଏହି ଅବସ୍ଥାର ପୂର୍ଣ୍ଣ ସଦୁପଯୋଗ କରେ । ମନ୍ତ୍ରରେ ଉଚ୍ଚାରିତ ଶବ୍ଦଗୁଡ଼ିକର କିଛି ମନସ୍ତାତ୍ତ୍ୱିକ ପ୍ରଭାବ ରହିଥିବ, ତାହା ସାପକାମୁଡ଼ା ରୋଗୀର ମନରେ ଭଲ ହୋଇଯିବାର ଭରସା ଆଣୁଥିବ । ମନ୍ତ୍ର ଉଚ୍ଚାରଣ ତଥା ଗୁଣିଆର ଉପଚାର ଦ୍ୱାରା ସାପ କାମୁଡ଼ାର ଆତଙ୍କରୁ ରୋଗୀର ମନ ଅନ୍ୟଆଡ଼େ ଅପସାରିତ ହୋଇଯାଉଥିବ । ତାହାଛଡ଼ା ଗୁଣିଆମାନେ ନିଜର ଦୀର୍ଘ ଅନୁଭୂତିରୁ ଯେ ଫାଇଦା ଉଠାଉ ନଥିବେ, ତାହା ନୁହେଁ । ସାପକାମୁଡ଼ା ଜାଗାରେ ବିଶେଷ କୌଣସି ପ୍ରତିକ୍ରିୟାର ସୂଚନା ମିଳୁ ନଥିଲେ ସାପଟି ବିଷାକ୍ତ ନୁହେଁ ଓ କ୍ଷତସ୍ଥାନରେ ପ୍ରତିକ୍ରିୟାର ସୂଚନା ଥିଲେ ସାପଟି ବିଷାକ୍ତ, ଏହା ଜାଣି ସେମାନେ ସେହି ଅନୁସାରେ ରୋଗୀର ସମ୍ପର୍କୀୟମାନଙ୍କୁ ଆରୋଗ୍ୟ ହେବା ନ ହେବା ସମ୍ବନ୍ଧରେ ଧାରଣା ଦେଉଥିବେ ।

## ସାପ୍ କ'ଣ ନେଉଳକୁ ମାରିପାରେନି ?

ନେଉଳକୁ ବିଷାକ୍ତ ସାପ କାମୁଡ଼ିଲେ ନେଉଳ ମଧ୍ୟ ମରିଯିବ । କିନ୍ତୁ ସାପ ଓ ନେଉଳ ମଧ୍ୟରେ ଲଢ଼େଇ ଚାଲିଲେ ନେଉଳ ପ୍ରାୟତଃ ଜିତିଯାଏ । କାରଣ ନେଉଳ ଖୁବ୍ ଚଞ୍ଚଳ ଓ ଖୁବ୍ ଦ୍ରୁତଗତିରେ ଶରୀର ଚାଳନା କରି ସାପର ଚୋଟରୁ ନିଜକୁ ରକ୍ଷା କରିପାରେ । ତାହାଛଡ଼ା ଲଢ଼େଇରେ ବ୍ୟାପୃତ ଥିବାବେଳେ ନେଉଳର ଲୋମମାନ ସିଧା ଠିଆ ହୋଇଯାଏ । ତେଣୁ ସାପ ଚୋଟ ମାରିଲେ ବି ବିଷଦାନ୍ତ ନେଉଳର ଚମକୁ ସହଜରେ ଛୁଇଁପାରେ ନାହିଁ ।

## ସର୍ପଦମ୍ପତି ମଧ୍ୟରୁ ଜଣକୁ ମାରିଦେଲେ ଅନ୍ୟ ଜଣକ କ'ଣ ତା'ର ପ୍ରତିଶୋଧ ନିଏ ?

ଆମ୍ଭମାନଙ୍କର ସାଧାରଣତଃ ଧାରଣା ଯେ ସର୍ପଦମ୍ପତିଙ୍କ ମଧ୍ୟରୁ ଜଣକୁ ମାରିଦେଲେ ଅନ୍ୟଜଣକ ଆତତାୟୀକୁ ଚିହ୍ନି ରଖେ ଓ ପରେ ସୁଯୋଗ ଉଣ୍ଡି ତା' ଉପରେ ଚୋଟ ବସାଇଦିଏ । ଏଭଳି ଧାରଣା ମୂଳରେ କୌଣସି ବୈଜ୍ଞାନିକ ଭିତ୍ତି ନାହିଁ । ସାପ ଲୋକ ଚିହ୍ନିପାରେନି କି ଲୋକକୁ ମନେ ରଖିପାରେନି । ଗୋଟିଏ ସାପକୁ ମାରିଦେଲେ ସେହି ସ୍ଥାନରେ ସେହି ଜାତିର ଆଉ ଏକ ସାପ ମିଳିବାର କାରଣ ହେଲା – ହୁଏତ ସେତେବେଳେ ସାପମାନଙ୍କର ମିଳନକାଳ ହୋଇଥିବ । ମିଳନ ଆଶାରେ ସର୍ପଦମ୍ପତି

ଏକତ୍ର ଅବସ୍ଥାନ କରୁଥିବେ । ତାହାଛଡ଼ା ମିଳନ କାଳରେ ମାଈ ସାପର ଲାଞ୍ଜ ପାଖରେ ଥିବା ଗ୍ରନ୍ଥିରୁ ଏକ ଦୁର୍ଗନ୍ଧଯୁକ୍ତ ପଦାର୍ଥ କ୍ଷରିତ ହୋଇଥାଏ । ଏହି ଗନ୍ଧ ପାଇ ମିଳନ ଆଶାରେ ପୁରୁଷ ସାପ ସାଙ୍ଗ ଖୋଜିବୁଲେ । ତେଣୁ କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଏକାଧିକ ସାପଙ୍କୁ ଦେଖିବାକୁ ମିଳିବାରେ ଅସ୍ୱାଭାବିକତା କିଛି ନାହିଁ

## ନାଗସାପ ବୁଢ଼ା ହୋଇଗଲେ କ'ଣ ତା'ର ବାଳ ଆଉ ନିଶ ଉଠେ ?

କେତେକ ଲୋକ ବିଶ୍ୱାସ କରନ୍ତି ଯେ, ନାଗସାପ ବୁଢ଼ା ହୋଇଗଲେ ତାର ନିଶ ଉଠେ ଓ ତା' ଦେହରେ ବାଳ ଗଜୁରେ । ଏପରି ଏକ ଧାରଣା ଭୁଲ୍ । ମଝିରେ ମଝିରେ ସାପ କାତି ଛଡ଼ାଏ ବୋଲି ଆମେ ସମସ୍ତେ ଜାଣୁ । ସାପ ଦେହରୁ, ମୁଣ୍ଡରୁ ଲାଞ୍ଜଯାଏ କେତେବେଳେ ହୁଏତ ଗୋଟିଏ ଅକ୍ଷତ କାତି ବାହାରିଯାଏ ତ କେତେବେଳେ କେମିତି କାତିଟି ଖଣ୍ଡ ଖଣ୍ଡ ହୋଇ ବାହାରେ । କାତିଟି ଛୋଟ ଛୋଟ ଖଣ୍ଡରେ ବାହାରୁଥିଲେ ଦେହର କୌଣସି ନା କୌଣସି ସ୍ଥାନରେ କାତିର ଅଂଶ ଲାଖି ରହି ନିଶ ବା ବାଳ ଉଠିବାର ଭ୍ରମ ସୃଷ୍ଟି କରୁଥିବ । ଲୋକଙ୍କ ମନରେ ବିଶ୍ୱାସ ଜାତ କରାଇବା ପାଇଁ ଜଣେ ଜଣେ ସାପୁଆକେଳା ସାପ ମୁଣ୍ଡରେ କଣାକରି କଣାବାଟେ ବାଳ ଭର୍ତ୍ତି କରିଦିଅନ୍ତି ଓ ସାପର ବାଳ ଆଉ ନିଶ ଉଠିଛି ବୋଲି କହି ଲୋକଙ୍କୁ ପ୍ରତାରିତ କରନ୍ତି । ଏହିପରି ଏକ ଘଟଣା କିଛିଦିନ ତଳେ ବମ୍ବେର ହାଫ୍‌କିନ୍ ଇନ୍‌ଷ୍ଟିଚ୍ୟୁଟ୍‌ଠାରେ ଧରାପଡ଼ିଥିଲା ।

## ନାଗପଞ୍ଚମୀ ପାଳନ କରିବାର ବିଜ୍ଞାନ-ସମ୍ମତ କାରଣ :

ଆମ ଦେଶରେ ବହୁଲୋକ ସାପକୁ ମାରିବା ପାଇଁ କୁଣ୍ଠାବୋଧ କରିଥାନ୍ତି । ନାଗପଞ୍ଚମୀ ଦିନ ସ୍ତ୍ରୀଲୋକମାନେ ସାପମାନଙ୍କ ଉଦ୍ଦେଶ୍ୟରେ ପୂଜା ଦେଇଥାନ୍ତି । ବିଶେଷକରି ନାଗକୁ ଦେବତା ଜ୍ଞାନ କରି ପୂଜା କରାଯାଏ । ଏହା ହୁଏତ ସାପମାନଙ୍କ ପ୍ରତି ମଣିଷର କୃତଜ୍ଞତା ପ୍ରକାଶର ଦୃଷ୍ଟାନ୍ତ । କାରଣ ସାପ ମୂଷାମାନଙ୍କର ଶତ୍ରୁ । ମୂଷାମାନେ ଚାଷଜମିରୁ ଅମଳ ହୋଇ ନଥିବା ଶସ୍ୟ ତଥା ଘରେ ସାଇତା ଶସ୍ୟକୁ ଖାଇଯାଆନ୍ତି । ସାପ ନଥିଲେ ମୂଷାବଂଶ ବଢ଼ି ଖାଦ୍ୟ ଅଭାବ ସୃଷ୍ଟି ହୁଅନ୍ତା ।

ତାହାଛଡ଼ା ସାପବିଷ, ସାପଚର୍ବି ଓ ସାପତେଲର ଔଷଧ ଗୁଣ ରହିଛି । ସାପ ଖାଦ୍ୟ ରୂପେ ମଧ ବ୍ୟବହୃତ ହୋଇଥାଏ । ଏହି ଦୃଷ୍ଟିରୁ ବିଚାର କଲେ ସାପ ହେଉଛି ଏକ ବିଶ୍ୱସ୍ତ ବନ୍ଧୁ । ବନ୍ଧୁର ଉପକାର ଶୁଝିବା ପାଇଁ ବର୍ଷରେ ଥରେ ବନ୍ଧୁ ଉଦ୍ଦେଶ୍ୟରେ ପୂଜା ଦେବା ଓ କ୍ଷୀର ଭଳି ସୁସ୍ୱାଦୁ ଖାଦ୍ୟପଦାର୍ଥ ଅର୍ପଣ କରିବା ଏକ ସ୍ୱାଭାବିକ ପ୍ରତିକ୍ରିୟା ।



# ସାପ କ'ଣ ଚକ୍ଷୁଶ୍ରବା ?

ବହୁ ଲୋକଙ୍କର ଧାରଣା ଯେ ସାପ ସଂଗୀତ ଶୁଣିବାକୁ ଭଲପାଏ । ସାପୁଆ କେଳାମାନେ ପଦ୍ମତୋଳା ବୋଲିଲେ ସାପ କୁଆଡ଼େ ଗାତଭିତରୁ ବାହାରି ଆସେ ଓ ସଂଗୀତ ଶବ୍ଦରେ ଆତ୍ମହରା ହୋଇଉଠେ । ଲାଉତୁମ୍ବା କିମ୍ବା ସପ୍ତସ୍ୱରୀ ବଜାଇଲେ ସାପ ତନ୍ମୟ ହୋଇ ଶୁଣିଥାଏ ବୋଲି ଅନେକ ବିଶ୍ୱାସ କରିଥାନ୍ତି । ପ୍ରକୃତରେ ଏହା ସାପୁଆକେଳାମାନଙ୍କର ଏକ ଚାଲ । ସାପ ସଂଗୀତ ଶୁଣିବାକୁ ଆଗ୍ରହ ପ୍ରକାଶ କରିଥାଏ ବୋଲି ଆମ୍ଭମାନଙ୍କର ଯେଉଁ ଧାରଣା ଅଛି, ତାହା ମୂଳରେ ରହିଛି ସେହି ସାପୁଆ କେଳାମାନଙ୍କର କାରସାଦି ।

ସେମାନେ ସାପ ଖେଳେଇଲାବେଳେ ପଦ୍ମତୋଳା ବୋଲନ୍ତି । ଲାଉତୁମ୍ବା କି ସପ୍ତସ୍ୱରୀ ବଜାନ୍ତି । ଅନ୍ୟ ସାପ୍‌ମାନଙ୍କ ଅପେକ୍ଷା ନାଗ ଅଧିକ ଚଞ୍ଚଳ । ତେଣୁ ସାପୁଆକେଳାର ଶରୀର ହଲିଲେ ତା ସହ ତାଳ ଦେଇ ନାଗ ସାପ ନିଜର ଶରୀର ଚାଳନା କରିଥାଏ । ସେ ତାର ହାତମୁଠାକୁ ଯେଉଁ ଦିଗକୁ ନିଏ, ନାଗସାପ ସେହି ଦିଗକୁ ତାର ଫଣା ବୁଲାଇଥାଏ । ସେହିପରି ସେ ଲାଉତୁମ୍ବାକୁ ବଜାଇବା ଅବସରରେ ତଳ ଉପର କଲେ କି ଆଗପଛ କଲେ ସାପ ମଧ୍ୟ ତଦନୁରୂପ ଫଣା ଚାଳନା କରିଥାଏ । ସାପ ସଂଗୀତପ୍ରେମରେ ଭୋଳ ହୋଇ ଫଣା ହଲାଇଥିବା କଥା ଭାବିନେବା ଆଦୌ ଠିକ୍ ନୁହେଁ ।

ମଣିଷ ତଥା ଅନ୍ୟ କେତେକ ପ୍ରାଣୀଙ୍କଠାରେ ଶବ୍ଦ ଶୁଣିବା ପାଇଁ ଯେପରି କର୍ଣ୍ଣ ରହିଛି, ସାପମାନଙ୍କର ସେପରି ନାହିଁ । ତେବେ ସେମାନଙ୍କର ବାହ୍ୟକର୍ଣ୍ଣ ନଥିଲେ ବି ଶ୍ରୁତି ଉପକରଣ ରହିଥିବା ଅନ୍ତଃକର୍ଣ୍ଣ ଅଛି । କିନ୍ତୁ ତାହା ବାୟୁରେ ଗତି କରୁଥିବା ଶବ୍ଦ ତରଙ୍ଗକୁ ବାରିପାରେ ନାହିଁ । ତେଣୁ କେବଳ ସଙ୍ଗୀତ ବା ପଦ୍ମତୋଳା ଗାଇଲେ କି ସପ୍ତସ୍ୱରୀକୁ ନ ହଲେଇ ସ୍ଥିର ରଖି ବଜାଇଲେ ସାପ ଆଦୌ ପ୍ରତିକ୍ରିୟା ପ୍ରକାଶ କରେନି କି ଫଣା ହଲାଏନି ।

ଆପଣମାନେ ଲକ୍ଷ୍ୟ କରିଥିବେ ଯେ ସାପକୁ ଖେଳେଇଲାବେଳେ କେଳା ନିଜର ହାତ ହଲାଉଥାଏ, ଆଣ୍ଠୁ ଏବଂ ଗୋଡ଼କୁ ଏପଟ ସେପଟ କରୁଥାଏ । କେତେବେଳେ ଭୂମିକୁ ପାଦରେ ଆଘାତ କରେ ତ ଆଉ କେତେବେଳେ ସାପଥିବା ପେଡ଼ିକୁ ଆଘାତ କରେ । ଦର୍ଶକ ସାପ ଉପରେ ନିଘା ରଖିଥିବା ବେଳେ ତାର ଅଲକ୍ଷ୍ୟରେ କେଳା ଉପରୋକ୍ତ ଉପାୟରେ ସାପଠାରେ ପ୍ରତିକ୍ରିୟା ସୃଷ୍ଟି କରିବା ପାଇଁ ଚେଷ୍ଟା କରେ । କେଳା ନିଶ୍ଚଳ ହୋଇ ବସିରହିଲେ ସାପ ମଧ୍ୟ ହଳଚଲ ନ ହୋଇ ସ୍ଥିର ଭାବରେ ଫଣାଟେକି ରହିଥିବ ।

ସାପର ତଥାକଥିତ ସେହି କାନ ବାୟୁରେ ଗତି କରୁଥିବା ଶବ୍ଦ ତରଙ୍ଗକୁ ସିନା ଧରିପାରେ ନି, କିନ୍ତୁ ଭୂମିରେ ସଂଚାରିତ ଶବ୍ଦକୁ ଶୁଣିବାରେ ତାର କୌଣସି ଅସୁବିଧା ହୁଏନି ।

ଯେଉଁ ଶବ୍ଦ ଭୂମିରେ କଂପନ ସୃଷ୍ଟି କରେ, ସେଭଳି ଶବ୍ଦ ସାପ ଶୁଣିପାରେ । ଭୂମି ଉପରେ ରଖି ଡ୍ରମ ବାଡ଼େଇଲେ ସାପ ସେ ଶବ୍ଦ ବାରି ପକାଏ । ଅନ୍ଧାର ରାତିରେ ବାହାରିଲାବେଳେ ଗାଁ ଗହଳିର ଲୋକମାନେ ବାଡ଼ି କି ଠେଙ୍ଗାଟିଏ ଧରି ବାହାରିଥାନ୍ତି । ବାଟରେ ଚାଲୁଥିଲାବେଳେ ଠେଙ୍ଗାରେ ଭୂମି ଉପରେ ଠକ୍ ଠକ୍ ଶବ୍ଦ ହେଲେ ନିକଟରେ ଥିବା ସାପ ତାହା ଶୁଣି ଜାଣିପାରେ ଏବଂ ନିଜର ନିରାପତ୍ତା ପାଇଁ ପଳାଇଯାଏ । ସାପସିନା ସପ୍ତସ୍ୱରୀର ସଂଗୀତ ଶୁଣି ପାରେନି, ହେଲେ ସପ୍ତସ୍ୱରୀ ଦ୍ୱାରା ମାଟିକୁ ଆଘାତ କଲେ ସାପ ତାହା ଶୁଣିପାରେ ।

ସାପର ଅନ୍ୟ ନାମ 'ଚକ୍ଷୁଶ୍ରବା'; କିନ୍ତୁ ସାପ ଅବା ଆଖିରେ ଶୁଣିପାରିବ କିପରି ? ଚକ୍ଷୁ ତ ଦୃଷ୍ଟିଯନ୍ତ୍ର, ଏହା ତ ଶ୍ରବଣ ଯନ୍ତ୍ର ନୁହେଁ । ସାପ ଚକ୍ଷୁରେ ଉପର ପତା ନଥିବାରୁ ଏହା ସର୍ବଦା ଖୋଲା ରହିଥାଏ । ପୁଣି ଅନ୍ୟ ପ୍ରାଣୀମାନଙ୍କ ଭଳି ଏହାର ବାହ୍ୟ କର୍ଣ୍ଣ ନଥାଏ । ବାହ୍ୟ କର୍ଣ୍ଣର ଅନୁପସ୍ଥିତି ଏବଂ ଖୋଲା ଚକ୍ଷୁଯୁଗଳକୁ ଲକ୍ଷ୍ୟକରି ସାପ ଆଖିରେ ଶୁଣେ ଏବଂ ସେ 'ଚକ୍ଷୁଶ୍ରବା' ବୋଲି ଲୋକେ ବିଶ୍ୱାସ କରିନେଇଛନ୍ତି; କିନ୍ତୁ ଏପରି ବିଶ୍ୱାସ ଆଦୌ ଠିକ୍ ନୁହେଁ । ସାପର 'ଚକ୍ଷୁଶ୍ରବା' ନାମକରଣ ମଧ୍ୟ ଭୁଲ ।

ସାପମାନଙ୍କ ପ୍ରତି ଆମର ଏକ ସ୍ୱାଭାବିକ ଭୟ ରହିଛି । ସାପ କାମୁଡ଼ିଲେ ଜୀବନ ପ୍ରତି ବିପଦ ସୃଷ୍ଟି ହେଉଥିବାରୁ ଏହି ଭୟ ଆହୁରି ଦୃଢ଼ୀଭୂତ ହୋଇଛି । ସାପୁଆକେଳାମାନେ ଏହି ପରିସ୍ଥିତିରୁ ବେଶ୍ ଫାଇଦା ଉଠାଇଥାନ୍ତି । ସେମାନେ ସାପ ସହ ଅଧିକ ପରିଚିତ ଥିବାରୁ ସେମାନଙ୍କ କଥାକୁ ଲୋକେ ସହଜରେ ବିଶ୍ୱାସ କରିନିଅନ୍ତି । ତେଣୁ ସାପମାନଙ୍କ ବିଷୟରେ ରହିଥିବା ଅନେକ ଅନ୍ଧ ବିଶ୍ୱାସକୁ ପ୍ରସାର କରାଇବାରେ କେଳାମାନଙ୍କ ଅବଦାନ ବେଶି ।

ବମ୍ବେସ୍ଥ ହାଫ୍‌କିନ୍ ଇନ୍‌ଷ୍ଟିଚ୍ୟୁଟର ଗବେଷକମାନେ ସାପୁଆକେଳାମାନଙ୍କୁ ନେଇ ସେଠାରେ ଥିବା ସାପଗୁଡ଼ିକୁ ପଦ୍ମତୋଳା କିମ୍ବା ସପ୍ତସ୍ୱରୀ ସଂଗୀତରେ ବଶ କରିବା ପାଇଁ ଯେତେ ପ୍ରଚେଷ୍ଟା କଲେ ବି ତାହା ବିଫଳ ହୋଇଛି । ସାପ ସଂଗୀତପ୍ରେମୀ ନୁହେଁ । ସାପ ବାୟୁରେ ସଞ୍ଚାରିତ ଶବ୍ଦକୁ ଆଦୌ ଶୁଣିପାରେନି । କିନ୍ତୁ କୌଣସି ଶବ୍ଦ ଭୂମିରେ କମ୍ପନ ସୃଷ୍ଟି କଲେ, ସାପ ତାହା ସହଜରେ ଶୁଣିପାରେ ।



ଆମେ ପରିଚିତ ଥିବା ସରୀସୃପଗୁଡ଼ିକ ମଧ୍ୟରେ ସାପ ଜାତିଟି ପ୍ରତି ଆମ କୌତୂହଳର ସୀମା ନାହିଁ । ସାହିତ୍ୟ, ସଂସ୍କୃତି, ଲୋକକଥା, ପର୍ବପର୍ବାଣୀରେ ଏହାର ସ୍ଥାନ ସ୍ୱତନ୍ତ୍ର । ତଥାପି, କେତୋଟି ମାତ୍ର ବିଷାକ୍ତ ସାପ ଯୋଗୁଁ ସମଗ୍ର ସାପକୁଳ ଆମ ଭୁଲ୍ ବୁଝାମଣାର ଶିକାର । ସାପ ବିଷ ଯେତେ ସଂଖ୍ୟକ ଲୋକଙ୍କ ମୃତ୍ୟୁ ପାଇଁ ଦାୟୀ, ତାହାଠାରୁ ଯଥେଷ୍ଟ ଅଧିକ ସଂଖ୍ୟକ ଲୋକ ସାପ କାମୁଡ଼ିବା ଦ୍ୱାରା ଛାନିଆ ହୋଇପଡ଼ି ମୃତ୍ୟୁବରଣ କରିଥାନ୍ତି । ତେଣୁ, ସାପ ଆମର ଯେତେ ଉପକାର କଲେ ମଧ୍ୟ ତା'ର ଉପକାର ପ୍ରାୟତଃ ଆମର ସ୍ୱୀକୃତି ପାଉନାହିଁ । ପୁଣି କୌତୂହଳ ଏବଂ ଭୟ ଯୋଗୁ ସାପ ବିଷୟରେ ଆମଠାରେ ବସା ବାନ୍ଧିଛି ଅନେକ ଅଜ୍ଞତା, ଅନେକ ଅନ୍ଧବିଶ୍ୱାସ ।

ସାପକୁ ତା'ର ନ୍ୟାଯ୍ୟ ମର୍ଯ୍ୟାଦା ଫେରେଇ ଦେବାର ଲକ୍ଷ୍ୟ ନେଇ ସାପ ସଂକ୍ରାନ୍ତରେ କେତେକ ଗୁରୁତ୍ୱପୂର୍ଣ୍ଣ ସୂଚନା ଏହି ପୁସ୍ତକଟିରେ ଲିପିବଦ୍ଧ କରାଯାଇଛି । ପୁସ୍ତକଟିର ପ୍ରକାଶନ ପାଇଁ ଅନୁଜ ପ୍ରତିମ ମନ୍ମଥ ପଟ୍ଟନାୟକ ଆନ୍ତରିକ ଆଗ୍ରହ ପ୍ରକାଶ କରିଥିବାରୁ ମୁଁ ତାଙ୍କଠାରେ ଋଣୀ ।

ISBN81-86354-92-1